ଛାତ୍ରସାଥୀ ଓ ବିଜ୍ଞାନ ବିଚିତ୍ରା



# ବୈଜ୍ଞାନିକ ଜେମ୍ସ ୱାଟ

# ଛାତ୍ରସାଥୀ : ବିଶ୍ବବିଚିତ୍ରା (୩୭)
# ଓ
# ଜେମ୍ସ ୱାଟ୍


୨୧ଶ ବର୍ଷ ୧୨ଶ ସଂଖ୍ୟା

୧୯୮୩

●

ସଂପାଦକ :

ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି

●

ପରିଚାଳନା ସଂପାଦକ :

ଶ୍ରୀ ନବକିଶୋର ମହାପାତ୍ର

●

ପ୍ରକାଶକ ଓ ମୁଦ୍ରକ :

କେ. ମହାପାତ୍ର ଏଣ୍ଡ କୋ.ଙ୍କ

ତରଫରୁ

ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା

ଗ୍ରାମପଞ୍ଚାୟତ ପ୍ରେସ

କଟକ-୨ ରେ ମୁଦ୍ରିତ

●

ମୂଲ୍ୟ ଟ ୬-୦୦


## ସୂଚୀପତ୍ର

(ଦଶ ଟଙ୍କା ଅଗ୍ରୀମ ପଠାଇ ଯେ କୌଣସି ବହିରୁ ଅନ୍ୟୂନ ଟ°୪୦-୦୦ର ବହି ଡାକଯୋଗେ ମଗାଇଲେ ୧୦% କମିଶନ ମିଳିବ ଓ ପୋଷ୍ଟେଜ ପ୍ୟାକିଂ ଆଦି ଛାଡ଼ କରିଦିଆଯିବ ।)

## ରହସ୍ୟ ଉପନ୍ୟାସ

| | | |
|---|---|---|
| ୩୧୭ ଏକ୍ସପ୍ରେସ | : ନଗେନ୍ଦ୍ରନାଥ ନନ୍ଦ | ୨-୪୦ |
| ବିଦେହୀ ଆତ୍ମା | : ଗଣେଶ ପ୍ରସାଦ ପରିଜା | ୧୨-୦୦ |
| ଷ୍ଟାଞ୍ଜଲ୍ୟକର ପ୍ରେମ ଓ ହତ୍ୟା | : କେ. ଏଲ୍. ଗଞ୍ଜା | ୪-୦୦ |
| ଷ୍ଟାକଡର ଷ୍ଟାଣୀ | : ପୁଲିନ ବିହାରୀ ରାୟ | ୫-୫୦ |
| ଅନ୍ଧକାରର ବିଭୀଷିକା | : ବିଜୟକୃଷ୍ଣ ମହାନ୍ତି | ୩-୦୦ |
| ନିଶାଚରୀ ବିଭୀଷିକା | : ପ୍ରମୋଦ କିଶୋର ପଣ୍ଡା | ୨-୪୦ |
| ଅନ୍ଧକାରର ଅରଣ୍ୟ | : ସୁଷମାଦେବୀ ମହାପାତ୍ର | ୩-୦୦ |
| ଭୌତିକ ବେଳାଭୂମି | : ଆଶୁତୋଷ ରାୟ | ୩-୦୦ |

## କାବ୍ୟ ଓ କବିତା

| | | |
|---|---|---|
| ହଂସଦୂତ (ଓଡ଼ିଆ, ଇଂରାଜୀ, ସଂସ୍କୃତ ଓ ହିନ୍ଦି) | : ବିଶ୍ୱନାଥ କର | ୨୪-୦୦ |
| କ୍ଷତ | : ରବି ସିଂ | ୭-୦୦ |
| ବିଷବାଣୀ | : ,, | ୭-୦୦ |
| ବିଦୀର୍ଣ୍ଣ | : ,, | ୭-୦୦ |
| ପଥପ୍ରାନ୍ତର କବିତା | : ,, | ୮-୦୦ |
| ଅପ୍ରୀତିକର କବିତା | : ,, | ୮-୦୦ |
| ଲାଲ ପାଗୋଡାର ପ୍ରେତ ଓ ଅନ୍ୟାନ୍ୟ କବିତା | : ,, | ୭-୦୦ |
| ଦୁର୍ଗମ ଗିରି | : ,, | ୯-୦୦ |
| ଶିଥିଳ ବଲ୍‌ଗା | : ,, | ୭-୦୦ |
| ସର୍ବହରା | : ,, | ୮-୦୦ |
| ଝଡ | : ,, | ୮-୦୦ |
| ବନ୍ୟା | : ,, | ୮-୦୦ |
| ଅନାର୍ଯ୍ୟର ଚର୍ଯ୍ୟାପଦ | : ,, | ୧୦-୦୦ |
| ପୋହଳା ଦ୍ୱୀପର ଉପକଥା | : ବିନୋଦଚରଣ ନାୟକ | ୭-୦୦ |
| ମନଲିନା | : ଏମ. ସି. ବିଶ୍ୱାଳ | ୭-୦୦ |
| ମରୁ ଗୋଲାପ ଓ ଅନ୍ୟାନ୍ୟ କବିତା | : ବ୍ରଜନାଥ ରଥ | ୮-୦୦ |
| ସଙ୍ଗୀତ ଗୀତଗୋବିନ୍ଦ | : ଗୋପୀନାଥ ଜଗଦ୍ଦେବ | ୩-୦୦ |
| କବିତା ୧୯୭୧ | : ସଚ୍ଚି ରାଉତରାୟ | ୭-୦୦ |
| ପାହାଚ | : ଏନ୍. ହରିଚନ୍ଦନ | ୬-୦୦ |
| ଅବତରଣ | : ବ୍ରହ୍ମୋତ୍ରୀ ମହାନ୍ତି | ୭-୦୦ |
| ଆକାର କବିତା | : ପ୍ରସନ୍ନ ପାଟଶାଣୀ | ୧୦-୦୦ |
| ଲଘୁ ପଞ୍ଚକ | : ଦୃଷ୍ଟି ଛତା | ୮.୦୦ |

ପ୍ରାପ୍ତିସ୍ଥାନ

**ଜେ. ମହାପାତ୍ର ଏଣ୍ଡ କୋ.**

ନିମଚଉଡ଼ି, କଟକ-୨

# ଜେମ୍‌ସ ୱାଟ

ବାଷ୍ପୀୟ ଶକ୍ତି ଇତିହାସରେ ଜେମ୍‌ସ ୱାଟଙ୍କର ଅବଦାନ ଅକଳନୀୟ । ବାଷ୍ପୀୟ ଇଂଜିନ୍ ସେତେବେ ଦୂରତା ପରିମାପ ଯନ୍ତ୍ରକୁ ମିକ୍ରୋମିଟର, ଲାଗ୍ଗାଏ, ଅଙ୍କନଯନ୍ତ୍ର ଇତ୍ୟାଦିକୁ ଯନ୍ତ୍ରର ଉଦ୍ଭାବକ ଭାବେ ଜେମ୍‌ସ ୱାଟ ଆମର ଏହି ପୃଥିବୀରେ ସୁପରିଚିତ । ସେ ବାଷ୍ପୀୟ ଇଞ୍ଜିନ୍ ତିଆରି କ୍ଷେତ୍ରରେ ଯେଉଁ ମୂଳଦୁଆ ସ୍ଥାପନ କ ଯାଇଥିଲେ, ଏହି କାର୍ଯ୍ୟକୁ ପୂର୍ଣ୍ଣ କରିଥିଲେ ଜର୍ଜ ଷ୍ଟିଫେନ୍‌ସନ୍ । ଆଜି ଆମେ ଯେଉ ରେଳଗାଡ଼ି ଦେଖୁଛି ସେହି ଇଞ୍ଜିନ୍‌ର ପ୍ରାଣପ୍ରତିଷ୍ଠାତା ଭାବରେ ୱାଟଙ୍କର ନାମକୁ ଅସ୍ୱୀକାର କରଯାଇ ପାରିବ ନାହିଁ । ଜେମ୍‌ସ ୱାଟ, ତାଙ୍କ ଜୀବନରେ ବହୁ ଘାତପ୍ରତିଘାତ ସହି ଜୀବନର ଶେଷ ପର୍ଯ୍ୟନ୍ତ ବିଭିନ୍ନ ଗବେଷଣା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ ।

ଜନ୍ମ—ସ୍କଟଲ୍ୟାଣ୍ଡର ଗ୍ରୀନକ୍ ସହରରେ ୧୭୩୬ ମସିହା ଜାନୁୟାରୀ ୧୯ ତାରିଖରେ ଜେମ୍‌ସ ୱାଟଙ୍କର ଜନ୍ମ । ବାପା ୱାଟ ଥିଲେ ଗ୍ରୀନ୍‌କ ସହରର ଜଣେ ପ୍ରଭାବଶାଳୀ ସୁପରିଚିତ ଲୋକ । ୱାଟ ସାହେବ ତାଙ୍କ ଜୀବନରେ ବଢ଼େଇ କାମ ଠାରୁ ଆରମ୍ଭକରି ସହରର କାଉନସିଲର, ମାଜିଷ୍ଟ୍ରେଟ ଏବଂ ଶେଷରେ ଜାହାଜ ବ୍ୟବସାୟ ପ୍ରଭୃତି ନାନା କାମ କରିଥିଲେ । ସେ ଖୁବ୍ ସାଧୁ, ଦୟାଳୁ ପ୍ରକୃତିର ଲୋକ । ତାଙ୍କ ମା ଥିଲେ ଦେଖିବାକୁ ଯେଉଳି ସୁନ୍ଦରୀ, ସେହିଭଳି ବୁଦ୍ଧିମତୀ । ତାଙ୍କର ବ୍ୟବହାର ମଧ୍ୟ ଖୁବ୍ ମଧୁର ଥିଲା । ଜେମ୍‌ସଙ୍କର ପିଲାଦିନର ନାମ ଥିଲା ଜେମି । ଜେମି ଥିଲେ ତାଙ୍କ ମା ବାପାଙ୍କର ଚତୁର୍ଥ ସନ୍ତାନ । ତାଙ୍କ ପୂର୍ବରୁ ତାଙ୍କର ମାଙ୍କର ତିନୋଟି ସନ୍ତାନଙ୍କର ମୃତ୍ୟୁ ହୋଇ ଯାଇଥିଲା । ଏଣୁ ଜେମିଙ୍କ ପ୍ରତି ବାପା ମାଆଙ୍କ ସ୍ନେହ ଆଦର ଥିଲା ଖୁବ୍ ବେଶୀ ।

ଜେମିର ବୟସ ସେତେବେଳକୁ ଛଅ ବର୍ଷ । ଦିନେ ତାଙ୍କ ଘରକୁ ଜଣେ ଅତିଥି ଆସିଥାନ୍ତି । ଘରକୁ ପଶି ଆସିବା ମାତ୍ରେ ତାଙ୍କର ଦୃଷ୍ଟି ପଡ଼ିଲା, ଜେମି ମାର୍ବଲ ଉପରେ ଚକ୍ ଖଡ଼ିରେ କ'ଣ ଗୁଡ଼ାଏ ଗାରଉଛି । ବନ୍ଧୁଙ୍କର ଧାରଣା ହେଲା ନିଶ୍ଚୟ ପିଲାଟିର ଦୁଷ୍ଟାମି, ଆଉ କିଛି ନୁହେଁ । ସେ ସଙ୍ଗେ ସଙ୍ଗେ ଯାଇ ୱାଟ ସାହେବଙ୍କୁ କହିଲେ, ପିଲାଟିକୁ କୌଣସି ସ୍କୁଲରେ ଭର୍ତ୍ତି କରିଦେବା ପାଇଁ । କାରଣ ଘରେ ବସି ବସି ପିଲାଟିର ଦୁଷ୍ଟାମି ଦିନକୁ ଦିନ ଅଧିକ ବଢ଼ିବାରେ ଲାଗିଛି । ୱାଟ ସାହେବ ସେ ଅତିଥିଙ୍କର ଏକଥା ଶୁଣି ଜେମି ପାଖକୁ ଯାଇଁ ଦେଖିଲେ ଜେମି ଗାରଉନି, ଚଟାଣରେ ଚକ୍ ଖଡ଼ିରେ ଗୋଟାଏ

ଅଙ୍କ କଷୁଛି । ହସି ହସି ସେ ତାଙ୍କର ଅତିଥିଙ୍କୁ କହିଲେ—ଭାଇ, ତୁମେ ଭୁଲ ବୁଝିଛ, ଜେମି ବଦମାସୀ କରୁଛି ବୋଲି ତାକୁ ଦୋଷଦେବା ପୂର୍ବରୁ ଥରେ ଭଲଭାବେ ଦେଖିନିଅନ୍ତୁ ସେ କ'ଣ କରୁଛି ।

ପିଲାଟିଦିନରୁ ଜେମସଙ୍କର ଗଣିତ ପ୍ରତି ଅଧିକ ଆଗ୍ରହ ଥିଲା । ସେ ଏ ଶିକ୍ଷା ତାଙ୍କ ବାପାଙ୍କ ଠାରୁ ପାଇଥିଲେ । ସବୁଠାରୁ ମଜାର୍ କଥା ଯେ ବିଭିନ୍ନ ଜିନିଷକୁ ଭାଙ୍ଗି ପୁଣି ତାକୁ ଗଢ଼ିବାରେ ତାଙ୍କର ଆଗ୍ରହ ଥିଲା ଅଧିକ । ଖେଳନା କଣ୍ଢେଇ ଇତ୍ୟାଦି ଯେତେବେଳେ ସେ ଯାହା ପାଉଥିଲେ ସେ ସବୁକୁ ସେ ଭାଙ୍ଗି ଘରେ ଥିବା ଯନ୍ତ୍ରପାତି ସାହାଯ୍ୟରେ ପୁଣି ଗଢ଼ିବାକୁ ଚେଷ୍ଟା କରୁଥିଲେ ।

ପିଲାଟିଦିନରୁ ଜେମିଙ୍କୁ ଯେତେବେଳେ ଦେଖିବ ସେ ଯାଇଁ ରୋଷେଇ ଘରେ ଚୁଲି ପାଖରେ ଚୁପଚାପ ବସି ରହନ୍ତି । ତାଙ୍କର ଏକମାତ୍ର ଲକ୍ଷ୍ୟ ହେଉଛି ଚୁଲି ଉପରେ ଥିବା କେଟଲି ଉପରେ । ପାଣି ପୂରଣ ହେବା ମାତ୍ରେ କେଟଲିର ଘୋଡ଼ଣିଟି ପଡ଼େ ଉଠେ । ଏହା ଦେଖି ଜେମିଙ୍କ କୌତୂହଳ କହିଲେ ନସରେ । ରହସ୍ୟ ଭେଦ କରିବା ଲାଗି ମନରେ ତାଙ୍କର ପ୍ରବଳ ଆଗ୍ରହ । ହାତରେ ଗୋଟାଏ କପ୍ ଆଉ ଗୋଟାଏ ଚାମଚ, କପଟିକୁ କେଟଲି ମୁହଁକୁ ଚାପି କିଛିକ୍ଷଣ ପରେ ଦେଖନ୍ତି କପ ଦେହରେ ବିନ୍ଦୁ ବିନ୍ଦୁ ହୋଇ ଜମିଯାଏ ପାଣି ।

ଏସବୁ କଥା ଦେଖି ତାଙ୍କ ମା' ତାଙ୍କ ଉପରେ ରାଗିକରି ଗାଳିଦେଇ କହନ୍ତି,ଜେମି ଏଠି ଏ କ'ଣ ହେଉଛି, ତୁ ଗୋଟାଏ ବିରାଟ ଅଳସୁଆ । ପଢ଼ାପଢ଼ି ନାହିଁ, କିଛି କାମ କରିବା ନାହିଁ, ଯେତେବେଳେ ଦେଖିବ ଆସି ଏଇ ବ' କେଟଲିଟା ପାଖରେ । ପିଲାଏ ବାହାରେ ଖେଳୁଛନ୍ତି, ବୁଲୁଛନ୍ତି, ସ୍କୁଲକୁ ଯାଉଛନ୍ତି ତାଙ୍କୁ ଦେଖି ତତେ ଲାଜ ମାଡୁନାହିଁ । ଏକଥା ... ଜେମି ଉତ୍ତର ଦିଅନ୍ତି—ଆଚ୍ଛା ମା' ତମେ କହିଲେ, ବାମ୍ପ ଗୁଡ଼ାକ ପାଣି ହୋଇଯାଉଛି କେମିତି ? ଏସବୁ କଥା ଶୁଣି ମା' ଆଉ କିଛି କହିପାରନ୍ତି ନାହିଁ । କେବଳ କହନ୍ତି ତୁ ଗୋଟାଏ ଚୁପ୍ ସଇତାନ ।

ସେ ପିଲାଟିଦିନରୁ ଖୁବ୍ ରୋଗଣା ଓ ଭାରି ଦୁର୍ବଳ ଥିଲେ । ତାଙ୍କର ମୁଣ୍ଡବ୍ୟଥା ରୋଗ ସବୁବେଳେ ଲାଗି ରହିଥିଲା; ତେଣୁ ଅନ୍ୟ ପିଲାଙ୍କପରି ଖେଳକୌତୁକରେ ଭାଗ ନେବା ତାଙ୍କ ପକ୍ଷରେ ସମ୍ଭବ ହେଉ ନଥିଲା । ଖେଳାଖେଳି ପାଇଁ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ଦେହରେ ବଳ ନ ଥିବା ହେତୁ ସବୁବେଳେ ଘରଟି ଭିତରେ ବସି ରହୁଥିଲେ । ଏହି ରୋଗ ପୀଡ଼ା ଯୋଗୁଁ ସେ ସ୍କୁଲକୁ ଯାଇ ପଢ଼ାପଢ଼ି କରିବା ଲାଗି ସକ୍ଷମ ହୋଇ ପାରୁ ନ ଥିଲେ । ବାପା ମା' ଯେତେବେଳେ ସମୟ ପାଆନ୍ତି ପଢ଼ାନ୍ତି, ଲେଖାଲେଖି ଶିଖାନ୍ତି । କିନ୍ତୁ ଜେମିର ଇଚ୍ଛାବିରୁଦ୍ଧରେ ସେମାନେ କିଛି କରିବାକୁ ସାହସ କରନ୍ତି ନାହିଁ । ଯେତେବେଳେ ଦେହ ଭଲ ରହେ ଜେମି ନିଜେ ପଢ଼ନ୍ତି । ବାପା ଆଗ୍ରହ ସହକାରେ

ପତ୍ରର ୭, ଦେହରେ ବଳ ନ ଥିଲେ କ'ଣ ହେଲା ସ୍ମୃତି ଶକ୍ତି ଥିଲା ଅତି ତୀକ୍ଷ୍ଣ, କାମ ପ୍ରତି ଆଗ୍ରହ ଥିଲା ତା ଠାରୁ ବେଶୀ ।

## କିଶୋର ଜୀବନ

କେତେକ ବର୍ଷ ପରେ ସେ ମୁଣ୍ଡବ୍ୟଥା ରୋଗରୁ କିଛି ଦିନ ପାଇଁ ରକ୍ଷା ପାଇଲେ । ସେତେବେଳକୁ ଅବଶ୍ୟ ଟିକିଏ ବୟସ ଅଧିକ ହୋଇ ଯାଇଥାଏ । ତଥାପି ଜେମ୍ସ ଜିଦ୍ କଲେ ପାଠ ପଢ଼ିବା ପାଇଁ । ମାକଡ୍ରାମ ନାମକ ଜଣେ ଶିକ୍ଷକଙ୍କ ଅଧୀନରେ ଗୋଟିଏ ଘରୋଇ ସ୍କୁଲରେ ପ୍ରଥମେ ତାଙ୍କ ନାମ ଲେଖା ହେଲା । ଘରେ ମଧ୍ୟ ଦୁଇଜଣ ଶିକ୍ଷକ ନିଯୁକ୍ତ ହେଲେ । ବିଭିନ୍ନ ଭାଷା ଶିଖିବା ସଙ୍ଗେ ସଙ୍ଗେ ଗଣିତ ଶାସ୍ତ୍ରରେ ସେ ବେଶ ପାରଦର୍ଶିତା ଲାଭ କଲେ । କିନ୍ତୁ ଏହା ପରେ ପରେ ପୁଣି ତାଙ୍କର ମୁଣ୍ଡବ୍ୟଥା ଆରମ୍ଭହୋଇ- ଯିବାରୁ ସେ ସ୍କୁଲକୁ ନିୟମିତ ଯିବା ସମ୍ଭବ ହେଲା ନାହିଁ । ଏପରିକି ବୟସ ଯେତିକି ବଢ଼ିଲା ମୁଣ୍ଡବ୍ୟଥା ସାଙ୍ଗକୁ ଦାନ୍ତ ଶୂଳେଇ ହେବା ରୋଗ ସେତିକି ବଢ଼ିଲା । ଏହା ଫଳରେ ସେ ରାତିରେ ମଧ୍ୟ ଶୋଇ ପାରନ୍ତି ନାହିଁ ।

ସମୟେ ସମୟେ କଷ୍ଟକୁ ସାମୟିକ ଭାବରେ ଭୁଲିବା ପାଇଁ ସେ ଭାରି ସଚେତ ହୋଇପାଆନ୍ତି । ନାନା ଅବାନ୍ତର ମିଛ କାହାଣୀ କହି ଅନ୍ୟମାନଙ୍କୁ ହସାନ୍ତି । ଶୋଇବା କଷ୍ଟକର ହୋଇପଡ଼ିଲେ ସେ ଶୋଇବାକୁ ନଯାଇ ଅନ୍ୟମାନେ ଶୋଇବାକୁ ଯାଉଥିବା ବେଳେ ନାନା ସରସ ମଜାମଜାର କାହାଣୀ କହି ସମସ୍ତଙ୍କୁ ଅଟକାଇ ରଖନ୍ତି । ଦିନେ ସେ ତାଙ୍କର ବଡ଼ ଭାଇ ଜଣଙ୍କ ସହିତ ମାମୁଁ ମାଇଁଙ୍କ ଘର ଗ୍ଲାସ୍‌ଗୋଠାକୁ ଯାଇଥାଆନ୍ତି । ରାତି ଦଶଟା ବେଳେ ସାଧାରଣତଃ ମାମୁଁ ମାଇଁ ଖାଇସାରିବା ପରେ ଶୋଇବା କଥା, କିନ୍ତୁ ତାଙ୍କ ମାଇଁ ଶ୍ରୀମତୀ ମଉରିହେଡ଼ କହନ୍ତି ଜେମିଟା ଥରେ ଥରେ ଏମିତି ମଉଜିଆ ଆଉ କରୁଣ କାହାଣୀ ଆରମ୍ଭ କରେ ଯେ, ପରିବାରର ସମସ୍ତେ ତା' ପାଖରେ ଘେରି ବସନ୍ତି । କଥା ଶୁଣୁଶୁଣୁ ରାତି ପାହିଯାଏ । ଥରେ ଥରେ ବଡ଼ ଭାଇ ଜଣ ମଧ୍ୟ ଗାଳିଦେଇ କହନ୍ତି—ଜେମ୍ସ ତୁ ଗଳ୍ପ ପରେ ଗଳ୍ପ ମନରୁ ସୃଷ୍ଟି କରୁଛୁ । ଇଏ କ'ଣ କେବେ ସରିବ ଯେ ଆମେ ଶୋଇବୁ ?

କିନ୍ତୁ ପ୍ରକୃତରେ ସେ କଥାକୁହାଳିଆ ନ ଥିଲେ । ନିଜର କଷ୍ଟକୁ ଭୁଲିବା ପାଇଁ ସେ କେବଳ ବିଭିନ୍ନ କାହାଣୀର ଅବତାରଣା କରୁଥିଲେ । ମାମୁଁ ଘରେ ଥିବା ସମୟରେ ଥରେ ରେଭରେଣ୍ଡ ନାମରେ ଜଣେ ଲୋକ ତାଙ୍କୁ "ଏଲିମେଣ୍ଟ ଅଫ ନାଚୁରାଲ ଫିଲସଫି" ନାମକ ଗୋଟିଏ ଦର୍ଶନ ଶାସ୍ତ୍ର ବହି ଦେଇଗଲେ । ବହିଟି ତାଙ୍କୁ ଏତେ ଭଲ ଲାଗିଲା ଯେ ସେ ତାକୁ ଥରେନୁହେଁ ବହୁଥର ପଢ଼ିବାକୁ ଲାଗିଲେ । ସେହିଦିନଠାରୁ ତାଙ୍କର କାହାଣୀ ପେଡ଼ି ବନ୍ଦ ରହିଲା । ବାକି ସମୟରେ ଜେମ୍ସଙ୍କର କାମ ହେଲା ବିଭିନ୍ନ ଯନ୍ତ୍ରପାତି ତିଆରି କରିବା । ଛୋଟ ଛୋଟ ବିଦ୍ୟୁତ ଯନ୍ତ୍ର ତିଆରି କରି ସାଙ୍ଗ

ସାଥୀଙ୍କ ଦେହରେ ଛୁଆଇଁ ଦିଅନ୍ତି । ସେମାନେ ଚମକି ଡେଇଁ ପଡ଼ିବା ମାତ୍ରେ ହସରୋଳ ଉଠେ । କେଟଲିରୁ ବାମ୍ପ ସଂଗ୍ରହ କରି ତାକୁ ପାଣିରେ ପରିଣତ କରିବା କାମ ଏହି ମାମୁଁ ଘରେ ହିଁ ଜେମ୍ସ ଆରମ୍ଭ କରନ୍ତି ।

ଦର୍ଶନ ଶାସ୍ତ୍ର ସମ୍ପର୍କରେ ମିଳିଥିବା ବହିଟି ପଢ଼ିବା ପରେ ଜେମ୍ସ ଅନ୍ୟାନ୍ୟ ବିଜ୍ଞାନ-ଶାସ୍ତ୍ର ପଢ଼ିବା ଆରମ୍ଭ କଲେ । ଔଷଧ, ଶରୀର ତତ୍ତ୍ୱ ନାନା ବିଷୟରେ ତାଙ୍କର ଅଧ୍ୟୟନ ଚାଲିଲା । ଚିକିତ୍ସା ଶାସ୍ତ୍ରକୁ ସେ ଏତେ ଭଲ ପାଉଥିଲେ ଯେ, ସେ ଏହିଥିରେ ଜୀବନ ନିର୍ବାହ କରିବା ପାଇଁ ଚାହିଁଥିଲେ ; କିନ୍ତୁ ସେ ଅତି ଭାବପ୍ରବଣ ଲୋକ ହେତୁ ଡାକ୍ତର ହେବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ବୋଲି ପରେ ଚିନ୍ତା କରି ଦେଖିପାରିଥିଲେ ।

ଜେମ୍ସ ଓ୍ୱାଟ କିଶୋର ଅବସ୍ଥାରେ ବାପାଙ୍କ ଜାହାଜ କାରଖାନାରେ ଅତିବାହିତ କରୁଥିଲେ । ବିଭିନ୍ନ ଯନ୍ତ୍ରପାତିର ବ୍ୟବହାର ଏବଂ ଜାହାଜ ଗୁଡ଼ିକର ସଂଯୋଗ ଆଦି କ୍ରମଶଃ ପ୍ରାଥମିକ ଶିକ୍ଷା ତାଙ୍କର ଏହି କାରଖାନାରେ ହୋଇଥିଲା । ବୟସ ବଢ଼ିବା ସଙ୍ଗେ ସଙ୍ଗେ କାରଖାନାର ବ୍ୟବହୃତ ବହୁତ ଜିନିଷର ମରାମତି କାମ ସେ ଶିଖି ପାରିଥିଲେ ।

ହସ୍ତ କୌଶଳରେ ପ୍ରୀତ ହୋଇ ଓ୍ୱାଟ ସାହେବ ପୁଅକୁ ଭାରି ଉତ୍ସାହ ଦିଅନ୍ତି । ଜେମ୍ସଙ୍କ ପାଇଁ ସେ ଏକ ସ୍ୱତନ୍ତ୍ର ଶାଳ ଘର ନିର୍ମାଣ କରିଦେଲେ । ଓ୍ୱାଟଙ୍କ ଜାହାଜମାନଙ୍କରେ ଯେତେବେଳେ ଇଞ୍ଜିନିୟାନ୍ତୁ ଆସୁଥିବା ଧୂଆଁପତ୍ର ବିଶେଷ ଭାବରେ ଚାଲୁଥିଲା । ଜାହାଜ ଲାଗି ଉପଯୋଗୀ ଦୂରବୀକ୍ଷଣ ଯନ୍ତ୍ର, ଉଚ୍ଚତା ପରିମାପକ ଯନ୍ତ୍ର ଆଦି ସମସ୍ତ ପ୍ରକାର ଯନ୍ତ୍ରପାତି ତାଙ୍କ କାରଖାନାରେ ମହଜୁଦ ଥାଏ । ଜେମ୍ସ ଏସବୁ ଯନ୍ତ୍ର ଦେଖିବା ମାତ୍ରେ ସଙ୍ଗେ ସଙ୍ଗେ ଫିଟାଇ ପକାନ୍ତି । ସେ ସବୁ ଭିତରେ କ'ଣ ଅଛି; କେଉଁ ଯନ୍ତ୍ରର କେଉଁ ଅଂଶର କାମ କ'ଣ ଜାଣିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ହୁଏ । ଖାଲି ଫିଟାନ୍ତି ନାହିଁ । ଦେଖି ସାରିବା ପରେ ପରେ ପୂର୍ବଭଳି ସଜାଡ଼ି ଥୋଇ ଦିଅନ୍ତି । କ୍ରମଶଃ ଜ୍ୟୋତିର୍ବିଦ୍ୟା ପ୍ରତି ମଧ୍ୟ ତାଙ୍କର ଆଗ୍ରହ ବଢ଼ିଲା । ଘରେ ଯେତେବେଳେ ସମସ୍ତେ ନିଘୋଡ଼ ନିଦରେ ଶୋଇ ପଡ଼ନ୍ତି, ରାତି ଅଧରେ ଜେମ୍ସ ନିକଟବର୍ତ୍ତୀ ଏକ ପାହାଡ଼ର ଶିଖର ଦେଶକୁ ଉଠନ୍ତି । ସେଠି ଚିତ୍ ହୋଇ ଶୋଇପଡ଼ି ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ନକ୍ଷତ୍ରମାନଙ୍କର ଗତିକୁ ଲକ୍ଷ୍ୟ କରନ୍ତି । ରାତି ପାହିଯାଏ । ଆକାଶରୁ ତାରାଗୁଡ଼ିକ ଲିଭିବା ପରେ ଯାଇ ଜେମ୍ସ ଘରକୁ ଫେରନ୍ତି ।

## ଯୌବନ ଏବଂ ଶିକ୍ଷା

ଜେମ୍ସଙ୍କୁ ଯେତେବେଳେ ଅଠର ବର୍ଷ, ଠିକ୍ ସେହି ସମୟରେ ତାଙ୍କ ବାପା ଓ୍ୱାଟ ସାହେବଙ୍କ ଜାହାଜ ବ୍ୟବସାୟରେ ବହୁତ କ୍ଷତି ହୋଇଗଲା । ଏପରିକି ପରିବାର

ପ୍ରତିପୋଷଣ କରିବା ମଧ୍ୟ ତାଙ୍କ ପକ୍ଷରେ କଷ୍ଟସାଧ୍ୟ ହୋଇପଡ଼ଲା । ଫଳରେ ଜେମ୍ସ ଏବଂ ତାଙ୍କ ଭାଇ ଜନ୍ ବାହାରିଲେ ଅର୍ଥ ଉପାର୍ଜନ ଉଦ୍ଦେଶ୍ୟରେ; ମାତ୍ର ଦୁର୍ଭାଗ୍ୟର ବିଷୟ ଯେ, ଏହାର କିଛିଦିନ ପରେ ଏକ ଜାହାଜ ଦୁର୍ଘଟଣାରେ ତାଙ୍କ ଭାଇ ଜନ୍‌ଙ୍କ ମୃତ୍ୟୁ ଘଟିଲା । ସେତେବେଳକୁ ଜେମ୍‌ସଙ୍କ ବୟସ ମାତ୍ର ତେଇଶ ବର୍ଷ । ଜେମ୍ସ ଭାବିଲେ ଯନ୍ତ୍ରପାତି କାରିଗର ଭାବରେ ବ୍ୟବସାୟ ଆରମ୍ଭ କରିବେ । ୧୭୫୪ରେ ମାମୁଁ ମାର୍ଘଙ୍କ ପାଖକୁ ଗ୍ଲାସଗୋ ଚାଲିଗଲେ । ତାଙ୍କର ଇଚ୍ଛା ଥିଲା, ଏଇଠି ତାଙ୍କ ବ୍ୟବସାୟ ଚଳାଇବା ସଙ୍ଗେ ସଙ୍ଗେ ଜଣେ ନିପୁଣହସ୍ତ କାରିଗରଠାରୁ ଅଧିକ କିଛି ଶିଖିବେ ; କିନ୍ତୁ ଗ୍ଲାସଗୋରେ ତାଙ୍କୁ ଶିକ୍ଷା ଦେବା ଭଳି କୌଣସି ଉପଯୁକ୍ତ କାରିଗର ମିଳିଲେ ନାହିଁ । ଏଣୁ ସେ ସେଠାରୁ ଘୋଡାରେ ବସି ଲଣ୍ଡନ ଚାଲିଆସିଲେ, ମାତ୍ର ଲଣ୍ଡନରେ ମଧ୍ୟ କୌଣସି କାରିଗର ତାଙ୍କୁ ଶିକ୍ଷା ଦେବାପାଇଁ ରାଜି ହେଲେ ନାହିଁ । ଏହାର କାରଣ ଥିଲା ଅଧିକାଂଶ କାରିଗରମାନେ ବିଭିନ୍ନ ବାଣିଜ୍ୟ ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ । ଯେଉଁ କେତେ ଜଣ ସ୍ୱାଧୀନ ଭାବରେ କାମ କରୁଥିଲେ ସେମାନେ ଶିକ୍ଷା ଦେବା ପାଇଁ ବହୁ ଅର୍ଥ ଦାବୀ କଲେ । ଜଣେ ଛାତ୍ର ଭାବରେ ଜେମ୍ସ ଅଧିକ ଅର୍ଥ ଦେବାକୁ ପ୍ରସ୍ତୁତ ଥିଲେ ମଧ୍ୟ ଯୋଗ୍ୟତା ହାସଲ କରିବାକୁ ୬।୭ ବର୍ଷ ଲାଗିଯିବ ବୋଲି ସମସ୍ତେ କହିଲେ । ଏତେ ବର୍ଷ ଧରି ଶିକ୍ଷା ଲାଭ କରିବାକୁ ତାଙ୍କର ଧୈର୍ଯ୍ୟ ନ ଥିଲା । ଏଣୁ ସେ ମୋର୍ଗାନ ନାମକ ଜଣେ କାରିଗର ପାଖରେ ବର୍ଷକ ପାଇଁ ଶିକ୍ଷା ଲାଭ କଲେ । ବର୍ଷକ ପାଇଁ ତାଙ୍କର ପାରିଶ୍ରମିକ କୋଡ଼ିଏ ଗିନି । ବଡ଼ କଷ୍ଟ କାମ ସକାଳୁ ସଂଧ୍ୟାଯାଏ ଖଟଣି । ଅର୍ଥାଭାବ, ଏଣୁ ସେ କଠୋର ପରିଶ୍ରମ କରିବାକୁ ଲାଗିଲେ ।

ଜେମ୍‌ସଙ୍କ କଠୋର ପରିଶ୍ରମ ଦେଖି ମୋର୍ଗାନ ସାହେବ ତାଙ୍କୁ ଖୁବ୍ ସ୍ନେହ କରୁଥିଲେ । ଏହି ସମୟରେ ସେ ପିତଳ ପାଟିଆ, ଥିଓଡ଼ ଲାଇଟ୍ ପ୍ରଭୃତି କେତେକ ଯନ୍ତ୍ରପାତି ଆପେ ଆପେ ପ୍ରସ୍ତୁତ କରିବା ଲାଗି ସକ୍ଷମ ହୋଇପାରିଥିଲେ ।

କିନ୍ତୁ ଏଠାରେ ସେ କଠୋର ପରିଶ୍ରମ କରିବା ହେତୁ ଖାଇବା, ଶୋଇବା ଆଦିର ଅବହେଳା ଯୋଗୁଁ ତାଙ୍କ ସ୍ୱାସ୍ଥ୍ୟ ପୂରାପୂରି ଖରାପ ହୋଇଉଠିଥିଲା । ଟ୍ରେନିଂ ସରିବାର କିଛିଦିନ ପୂର୍ବରୁ ପୁଣି ମୁଣ୍ଡବ୍ୟଥା ଏବଂ ଦାନ୍ତ ଶୂଳ ଆରମ୍ଭ ହେଲା । ଏହି ସମୟରେ ତାଙ୍କ ମା'ଙ୍କର ବିୟୋଗ ଘଟିଥିଲା । ଜୀବନରେ ସେ ମା'ଙ୍କୁ ସବୁଠାରୁ ଅଧିକ ସ୍ନେହ ଓ ଭକ୍ତି କରୁଥିଲେ ।

ଦେହ ଭଲ ହେବା ପରେ ସେ କେତେକ ଯନ୍ତ୍ରପାତି ଧରି ପୁଣି ବ୍ୟବସାୟ କରିବା ପାଇଁ ଗ୍ଲାସ୍‌ଗୋ ଚାଲିଲେ । ଜଣେ ଯନ୍ତ୍ରପାତି ପ୍ରସ୍ତୁତକାରୀ ଭାବରେ ବ୍ୟବସାୟ ଆରମ୍ଭ କରିବା ପାଇଁ ସେ ଯେତେବେଳେ ଦୋକାନଟିଏ ଭଡା ନେବାକୁ ବସନ୍ତି, ଅନ୍ୟ ଯନ୍ତ୍ର ପ୍ରସ୍ତୁତକାରୀ ବ୍ୟବସାୟୀମାନେ ଘୋର ଆପତ୍ତି କରିବାର ଦେଖାଗଲା । ସମସ୍ତଙ୍କ ବିରୋଧ ହେଲା ଓ୍ୱାଟ ଉପଯୁକ୍ତ ଶିକ୍ଷା ପାଇନାହାଁନ୍ତି । ତେଣୁ ସେ ଜଣେ କାରିଗର

ଭବରେ ଅନ୍ୟମାନଙ୍କ ସହିତ ସମାନ ହୋଇ ବ୍ୟବସାୟ ଆରମ୍ଭ କରିପାରିବେ ନାହିଁ । ଏହି ବିରୋଧ ଏତେ ଭୀଷଣ ହୋଇ ଉଠିଥିଲା ଯେ, ଜେମ୍ସ ନିରୁପାୟ ହୋଇ ଗ୍ଲାସଗୋ ଛାଡ଼ିବାକୁ ସ୍ଥିର କରିଥିଲେ । ମାତ୍ର ଏହି ସମୟରେ ତାଙ୍କର ମାମୁଁ ମହଭିହେର୍ଡ, ଜଣେ ବନ୍ଧୁଙ୍କ ସାହାଯ୍ୟରେ ଗ୍ଲାସଗୋ ବିଶ୍ୱବିଦ୍ୟାଳୟରେ ଗୋଟିଏ କାମରେ ନିଯୁକ୍ତ କରାଇ ଦେଲେ । ସୌଭାଗ୍ୟକୁ ଠିକ୍ ଏହି ସମୟରେ ବିଶ୍ୱବିଦ୍ୟାଳୟରେ ଗୋଟିଏ ପର୍ଯ୍ୟବେକ୍ଷଣାଗାର ଖୋଲାଯିବା ଲାଗି ଯନ୍ତ୍ରପାତି ମଗା ହୋଇ ଆସିଥାଏ । ଏହି ଯନ୍ତ୍ରପାତିକୁ ସଫାସୁତୁରା କରିବା ଏବଂ ଖଞ୍ଜାଖଞ୍ଜି କରି କାମ ଆରମ୍ଭ କରିବା ପାଇଁ ଜଣେ ଲୋକ ଖୋଜା ଯାଉଥାଏ । ଭାଗ୍ୟକୁ ଜେମ୍ସ ଓ୍ୱାଟ ଯାଇଁ ସେଇଠି ଜୁଟିଗଲେ । ସଙ୍ଗେ ସଙ୍ଗେ ରହିବି ବ୍ୟବସ୍ଥା ହୋଇଗଲା । ତାଙ୍କୁ କେତେକ ସପ୍ତାହିକାଳ ହାଡଭଙ୍ଗା ପରିଶ୍ରମ କରିବାକୁ ପଡ଼ିଥିଲା । ମଜୁରୀ ମିଳିଥିଲା ପ୍ରଥମେ ପାଂଚ ପାଉଣ୍ଡ, କିନ୍ତୁ ଯନ୍ତ୍ରପାତି ସଜାଡ଼ିବା କାମ ସେ ଏତେ ଭଲ ଭାବରେ କଲେ ଯେ, ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଖୁସି ହୋଇ ତାଙ୍କ ଲାଗି ଗୋଟିଏ ନୂତନ ଘର ଛାଡ଼ିଦେଲେ । ବିଶ୍ୱବିଦ୍ୟାଳୟର "ଗଣିତଶାସ୍ତ୍ର ଲାଗି ଉପଯୋଗୀ ଯନ୍ତ୍ରପାତି ପ୍ରସ୍ତୁତକାରୀ" ଭାବରେ ସେ କ୍ରମଶଃ ଜନପ୍ରିୟ ହୋଇ-ଉଠିଲେ ।

ଜେମ୍ସ ୱାଟଙ୍କର ପ୍ରଥମ ବ୍ୟବସାୟ ଆରମ୍ଭ ହେଲା ୧୭୫୭ ରେ । ସେତେବେଳକୁ ତାଙ୍କର ବୟସ ଏକୋଇଶ । ବିଶ୍ୱବିଦ୍ୟାଳୟର ଅନ୍ୟାନ୍ୟ କାମ ମଧ୍ୟ ତାଙ୍କୁ ଯୋଗାଇ ଦିଆଗଲା । ଚିକିତ୍ସା ଶାସ୍ତ୍ରରେ ପରୀକ୍ଷା ଲାଗି ଆବଶ୍ୟକ ହେଉଥିବା ଯନ୍ତ୍ରପାତି ନିର୍ମାଣ ଲାଗି ବହୁ ଗ୍ରାହକ ଜୁଟିଲେ । ବିଶ୍ୱବିଦ୍ୟାଳୟର ଔଷଧ ଅଧ୍ୟାପକ ଡକ୍ଟର ଯୋସେଫ୍ ବ୍ଲାକ ତାଙ୍କ ଯନ୍ତ୍ରପାତି ତିଆରି କରିବାରେ ଖୁସିହୋଇ ସମୟେ ସମୟେ କମିଶନ ମଧ୍ୟ ଦେଉଥାନ୍ତି । ଜେମ୍ସ ୱାଟ ଖାଲି ମରାମତି ଓ ଖଞ୍ଜାଖଞ୍ଜି କାମ କରନ୍ତି ନାହିଁ, ବେଳେବେଳେ ନୂଆ ଯନ୍ତ୍ରପାତି ମଧ୍ୟ ମନକୁ ତିଆରି କରିଥାନ୍ତି । ଡକ୍ଟର ବ୍ଲାକ ଜେମ୍ସଙ୍କ କାରିଗରୀ ଓ ଉଦ୍ଭାବନ ଶକ୍ତି ଦେଖି ବିଶେଷଭାବରେ ମୁଗ୍ଧ ହୋଇ-ପଡ଼ିଲେ ।

କ୍ରମେ କ୍ରମେ ତାଙ୍କର ଆଦର ବଢ଼ିଲା । ପ୍ରଥମେ ସେ ଖୁବ୍ କମ୍ ପାରିଶ୍ରମିକ ନେଉଥିଲେ । ଏତେ କମ ପାରିଶ୍ରମିକ ନେଲେ ଯେ ପ୍ରଥମ ଦୁଇ ବର୍ଷ ପରେ ହିସାବ କରି ଦେଖିଲେ ଯେ, ଲାଭ ହୋଇଛି ମୋଟ ୭୦ ପାଉଣ୍ଡ । ସାହାଯ୍ୟକାରୀ ଏହାପରେ ଜଣେ ରହିବା ପାଇଁ ସ୍ଥିର କଲେ ।

ଜନ୍ କ୍ରୋଇଦ ନାମରେ ଜଣେ ଲୋକ ରାଜିହେଲେ କିଛି ଟଙ୍କା ଧାର ସ୍ୱରୂପ ଦେବାପାଇଁ । ସର୍ତ୍ତ ରହିଲା—ଯାହା ଲାଭ ହେବ ସେଥିରୁ ସେ ଭାଗ ନେବେ । ସାହାଯ୍ୟକାରୀ ରଖିବା ପରେ ସ୍ୱତନ୍ତ୍ର ଧରଣର ଉଚ୍ଚତା ପରିମାପକ ଯନ୍ତ୍ର ତିଆରି କରି ବଜାର ଦରଠାରୁ କମ୍ ଦରରେ ବିକିଲେ । ସଙ୍ଗୀତ ଉପଯୋଗୀ ବାଦ୍ୟଯନ୍ତ୍ର ଯଥା—ବେହେଲା,

ବଂଶୀ, ସୀତାର, ଗିଟାର ଆଦି ମଧ୍ୟ ତିଆରି ଚାଲିଲା । ଲୋକେ ଏସବୁ କାମ ଦେଖି ଆଶ୍ଚର୍ଯ୍ୟ ହୋଇ ଉଠୁଥିଲେ । ଲୋକଟା ଗୀତ ବା ସଙ୍ଗୀତର ନାଁ ଧରେନା, ତାଳ ଲୟ ଜାଣେନା, ତଥାପି ସୁନ୍ଦର ବାଦ୍ୟଯନ୍ତ୍ର ତିଆରି କରିବାରେ କିଏ ବା ଆଶ୍ଚର୍ଯ୍ୟ ନହେବ ?

ଏହାପରେ ଧୀରେ ଧୀରେ ତାଙ୍କର ଆର୍ଥିକ ପରିସ୍ଥିତି କ୍ରମଶଃ ସ୍ୱଚ୍ଛଳ ହୋଇ ଆସିଲା । ୧୭୬୪ ରେ ସେ ମନେ ମନେ ସ୍ଥିରକଲେ ବିବାହ କରିବେ । ତାଙ୍କର ଜଣେ ଆତ୍ମୀୟା ମାର୍ଗାରେଟ ମିଲରଙ୍କ ସହିତ ତାଙ୍କର ବିବାହ ହେଲା । ବିବାହ ପରେ ଗ୍ଲାସଗୋର ସର୍ବୋତ୍କୃଷ୍ଟ ବସ୍ତି କିଙ୍ଗ୍‌ଷ୍ଟ୍ରିଟରେ ଗୋଟିଏ ବଡ଼ ଘରେ ବସବାସ ଆରମ୍ଭ କଲେ । ମାର୍ଗାରେଟଙ୍କୁ ସେ ପିଲାଦିନରୁ ଭଲ ପାଉଥିଲେ । ମାର୍ଗାରେଟ ମଧ୍ୟ ଜେମ୍‌ସଙ୍କ ଭଳି ବଡ଼ ମଧୁର ପ୍ରକୃତିର ଝିଅ । ଅତି ଭଦ୍ର କଥାବାର୍ତ୍ତା, ସରଳ, ମିଠା ।

ବିବାହର କିଛିଦିନ ପୂର୍ବରୁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ହଠାତ୍ ଦିନେ ବରଦକଲେ ଗୋଟିଏ ବାଷ୍ପୀୟ ଇଞ୍ଜିନର ନମୁନା ମରାମତି କରିବା ପାଇଁ । ଛାତ୍ରମାନଙ୍କୁ ଶିକ୍ଷା ଦେଲା-ବେଳେ ଦେଖାଇବା ଲାଗି ସେଭଳି ଗୋଟିଏ ଜିନିଷ ଅଧ୍ୟାପକମାନେ ଦରକାର କରୁଥିଲେ । ବିଶ୍ୱବିଦ୍ୟାଳୟରେ ନମୁନାଟି ଥିଲା ତାକୁ ପ୍ରଥମେ ୧୭୦୨ ରେ ବିଖ୍ୟାତ ଇଞ୍ଜିନିୟର ଥୋମ୍‌ସ ନିଉକମେନ୍ ଆବିଷ୍କାର କରିଥିଲେ । ଆଗରୁ କୋଇଲା ଖଣିରୁ ପାଣି ପମ୍ପକରି ଉଠାଇବା ଲାଗି ଯେଉଁ ଇଞ୍ଜିନ ବ୍ୟବହାର ହେଉଥିଲା ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଇଞ୍ଜିନ ତାଠାରୁ ଟିକିଏ ଉନ୍ନତ ଧାରଣର ।

ପ୍ରଥମେ ଏହି ଯନ୍ତ୍ରଟି ଏକ ଗୋଲାକାର ପାତ୍ର ଆକାରରେ ଥିଲା । ବାୟୁର ଚାପ ଦ୍ୱାରା ଏହା ପରିଚାଳିତ ହୁଏ । ନ[illegible] ହୋଇଯାଉଥିବା କୋଇଲା ଦ୍ୱାରା ଏହାର ଉତ୍ତାପ ସୃଷ୍ଟି କରାଯାଉ ଥିଲା । ଯନ୍ତ୍ରଟି ସହିତ ଗୋଟିଏ ପିଷ୍ଟନ୍ ସଂଯୁକ୍ତ ରହିଥାଏ । ପିଷ୍ଟନର ସ୍ପର୍ଶମାତ୍ରକେ ପିଷ୍ଟନ ତଳେ ରହୁଥିବା ବାୟୁ ବାଷ୍ପ ଆକାରରେ ଉପରକୁ ଉଠି ଆସୁଥିଲା । ଥଣ୍ଡାପାଣି ଆପେ ଆପେ ଏହି ଗୋଲାକାର ପାତ୍ର ଭିତରକୁ ପ୍ରବେଶ କଲାମାତ୍ରେ ବାଷ୍ପକୁ ଜମାଟ ବାନ୍ଧିଯାଇ ଏକ ଶୂନ୍ୟସ୍ଥାନ ସୃଷ୍ଟି ହେଉଥିଲା । ସିଲିଣ୍ଡର ବା ଗୋଲାକାର ପାତ୍ରର ନିମ୍ନ ପ୍ରଦେଶରେ ଶୂନ୍ୟସ୍ଥାନ ସୃଷ୍ଟି ହେଲା ମାତ୍ରକେ ଉପରୁ ଚାପ ସଙ୍ଗେ ସଙ୍ଗେ ଆସି ପଡୁଥିଲା । ଫଳରେ ପିଷ୍ଟନ ତଳକୁ ଖସିଆସେ ଏବଂ ପମ୍ପ ଚାଲୁହୁଏ ।

କାର୍ଯ୍ୟତଃ ନିଉକମେନ୍ ହିଁ ବାଷ୍ପୀୟ ଇଞ୍ଜିନ ତିଆରି କରିବା ଦିଗରେ ପ୍ରଥମେ ଉଦ୍ୟମ କରିଥିଲେ । ଲୋକେ-ଏହି ଇଞ୍ଜିନକୁ ବାଷ୍ପୀୟ ଇଞ୍ଜିନ ନକହି ଆଗ୍ନେୟ ବା ଫାୟାର ଇଞ୍ଜିନ ବୋଲି କହୁଥିଲେ । କିନ୍ତୁ ଏହା ଆଂଶିକ ଭାବରେ ବାଷ୍ପଦ୍ୱାରା ପରିଚାଳିତ ହେଉଥିଲା । ଏହା ଅତି ପ୍ରାଚୀନ । ଆମେ ବର୍ତ୍ତମାନ ଯେଉଁ ବାଷ୍ପୀୟ ଇଞ୍ଜିନ ଦେଖୁ, ରୂପ ବା ଆକାରରେ ଏହା ସହିତ କୌଣସି ସାମଞ୍ଜସ୍ୟ ନାହିଁ । ଆବଶ୍ୟକୀୟ ବାଷ୍ପ ଉତ୍ପାଦନ ଲାଗି ଏଥିରେ ବହୁ ପରିମାଣରେ କୋଇଲା ଦରକାର ହୁଏ ।

ତେଣୁ କୋଇଲା ଖଣି ବ୍ୟତୀତ ଅନ୍ୟସ୍ଥାନ ମାନଙ୍କରେ ଏହାକୁ ବ୍ୟବହାର କରିବାରେ ବହୁତ ଖର୍ଚ୍ଚ ଲାଗୁଥିଲା । କୋଇଲା ଖଣିମାନଙ୍କରେ ସିନା ନଷ୍ଟ ହୋଇଯାଉଥିବା କୋଇଲା ବ୍ୟବହାର କରିହେବ, ଅନ୍ୟ ସ୍ଥାନରେ ତ କୋଇଲା କିଣିବା ଅଧିକ ବ୍ୟୟସାପେକ୍ଷ । ନିଉକମନଙ୍କ ଇଞ୍ଜିନର ନମୁନାକୁ ଦେଖି ୱାଟଙ୍କର ମନେହେଲା ଏ ଗୋଟାଏ ଖେଳଣା । କିନ୍ତୁ ତାକୁ ଦେଖିବା ପରେ ପରେ ଏକ ଉନ୍ନତ ଧରଣର ଇଞ୍ଜିନ ତଆରି କରିବା ଲାଗି ବହୁତ ଚିନ୍ତାକଲେ । ନିଉକମନଙ୍କ ଇଞ୍ଜିନର ଦୁଇଟି ବ୍ୟବସ୍ଥାକୁ ସେ ଲକ୍ଷ୍ୟ କଲେ । ବାଷ୍ପ ଜମାଟ ବାନ୍ଧିବା ପାଇଁ ବହୁ ପରିମାଣରେ ଥଣ୍ଡାଜଳ ସିଲିଣ୍ଡର ଭିତରେ ପ୍ରବେଶ କରୁଯାଇଛି ଏବଂ ଇଞ୍ଜିନ ରୀତିମତ କାମ କଲାପରେ ବିନା କାରଣରେ ବନ୍ଦ ହୋଇ ଯାଉଛି । ୱାଟ ଭାବିଲେ ଯେ, କୌଣସି କାର୍ଯ୍ୟର କାରଣ ନିଶ୍ଚୟ ଭାବରେ ରହିଛି । କାରଣ ଅନୁସନ୍ଧାନ କରିବାକୁ ହେବ । ଏସବୁ ତ୍ରୁଟିର କାରଣ ଜାଣିବା ପାଇଁ ଉଦ୍ୟମ ଚଳାଇଲେ । କେତେ ପାଣିରୁ କେତେ ବାଷ୍ପ ହେଉଛି ସେ ହିସାବ କରି ଦେଖିଲେ ପାଣି ବାଷ୍ପରେ ପରିଣତ ହେବା ଅବସ୍ଥାକୁ ଆସିବାବେଳେ ଉତ୍ତାପର ମାତ୍ରା କେତେ ରହିଛି ଏବଂ ବାଷ୍ପର ଚାପ କେତେ ହେଉଛି ସବୁ ଚିହ୍ନିକିଶି ଭାବରେ ଦେଖାଗଲା । ବାଷ୍ପ ସାହାଯ୍ୟରେ ଉତ୍ତାପ ଗରମ ପାଣି ଦ୍ରବକୁ ମଧ୍ୟ ସେ ପରୀକ୍ଷା କଲେ । ସେ ଲକ୍ଷ୍ୟକଲେ ଯେ, ପାଣି ଫୁଟିବା ଅବସ୍ଥାକୁ ଆସିବାବେଳକୁ ବାଷ୍ପର ଓଜନ ଛ ଗୁଣ ବଢ଼ଯାଉଛି ।

ଏସବୁ ପରୀକ୍ଷା ପରେ ସେ ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ଅନ୍ୟ ବାୟବୀୟ ଇଞ୍ଜିନ ଭଳି ନିଉକମନଙ୍କ ଇଞ୍ଜିନ ମଧ୍ୟ କେତେକ ଭୁଲ ନୀତି ଉପରେ ପ୍ରତିଷ୍ଠିତ । ସେ ଚିନ୍ତା କରି ଦେଖିଲେ ଯେ, ପ୍ରଚଳିତ ଇଞ୍ଜିନର ପ୍ରଧାନ ତ୍ରୁଟି ହେଉଛି ବାଷ୍ପକୁ ଜମାଟ କରିବା ପାଇଁ ଥଣ୍ଡାପାଣି ଅନେକ ଭର୍ତ୍ତି କରିଦେବା ଫଳରେ ସିଲିଣ୍ଡରଟି ଥଣ୍ଡାହୋଇ ଯାଉଛି । ସିଲିଣ୍ଡରକୁ ଗରମ କରିବା ପାଇଁ ଅଧିକ ବାଷ୍ପ ଦରକାର । ଏହା ଫଳରେ ବହୁ ପରିମାଣରେ ବାଷ୍ପ ନଷ୍ଟ ହେଉଛି । ଏହି ଭୁଲ ସଂଶୋଧନ ଲାଗି ସେ ବହୁରାତି ଅନିଦ୍ରା ହୋଇ ଚିନ୍ତା କରିଛନ୍ତି । ଶେଷରେ ସ୍ଥିର କଲେ ଯେ, ବାଷ୍ପ ପୂର୍ଣ୍ଣଉପଯୋଗ ଲାଗି ପ୍ରଥମରେ ବାଷ୍ପ ଯେମିତି ଗରମ ହୋଇ ରହିଥିବ, ସେହିଭଳି ସିଲିଣ୍ଡରକୁ ମଧ୍ୟ ସବୁବେଳେ ଗରମ କରି ରଖିବାକୁ ପଡ଼ିବ । ଦ୍ୱିତୀୟରେ ବାଷ୍ପ ଜମାଟ ବାନ୍ଧିବା ପରେ ଯେତିକି ପାଣିସୃଷ୍ଟିହେବ ଏବଂ ଯେଉଁ ପରିମାଣରେ ପାଣି ଭିତରକୁ ପ୍ରବେଶ କରୁଯାଇଥିବ ସେସବୁକୁ ଶହେଡ଼ିଗ୍ରୀ ଉତ୍ତାପମାତ୍ରା ପର୍ଯ୍ୟନ୍ତ ଥଣ୍ଡା କରାଇ ଦେବାକୁ ପଡ଼ିବ ।

ଏହି ତଥ୍ୟକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଜେମ୍ସ ୱାଟଙ୍କୁ ଦୁଇ ବର୍ଷ ଲାଗି ଯାଇଥିଲା । ୧୭୬୫ ମସିହାର ଗୋଟିଏ ରବିବାର । ରାସ୍ତାରେ ବୁଲୁ ବୁଲୁ ତାଙ୍କ ମନକୁ ଗୋଟିଏ କଥା ଆସିଲା । ଗୋଟିଏ ବାଷ୍ପପୂର୍ଣ୍ଣ ସିଲିଣ୍ଡର ସାଥୀକୁ ଗୋଟିଏ ବାୟୁହୀନ ଖାଲି ପାତ୍ରକୁ ଯୋଡ଼ ଯଦି ବାଟ ରଖାଯାଏ, ତା'ହେଲେ ବାଷ୍ପ ସଙ୍ଗେ ସଙ୍ଗେ

ଖାଲି ପାତ୍ର ମଧ୍ୟକୁ ମାଡ଼ି ଆସିବ ଏବଂ ଉଭୟ ପାତ୍ରର ସ୍ତର ସମାନ ରହିବା ପର୍ଯ୍ୟନ୍ତ ଏହି କାର୍ଯ୍ୟ ଚାଲୁ ରହିବ । ପାତ୍ରଟିକୁ ଯଦି ଖୁବ୍ ଥଣ୍ଡା ରଖାଯାଏ, ବାଷ୍ପ ଜମାଟ ବାନ୍ଧିବା ପର୍ଯ୍ୟନ୍ତ ପାତ୍ର ଭିତରକୁ ଅଧିକ ମାତ୍ରାରେ ନିଶ୍ଚୟ ପ୍ରବେଶ କରିବ ।

ପ୍ରତ୍ୟେକ ଇଂଜିନରେ ବାଷ୍ପକୁ ଜଳରେ ପରିଣତ କରିବା ଲାଗି ଅଲଗା କଣ୍ଡେନସର୍ ଯନ୍ତ୍ର ବ୍ୟବହାର କରିବା କଥା ଜେମ୍ସ ୱାଟ ପ୍ରଥମେ ଉଦ୍ଭାବନ କରିଥିଲେ । ସେ ଘରକୁ ଫେରି ଆସିବାପରେ ବହୁଦିନ ଧରି ଯେଉଁ ବିଷୟ ଚିନ୍ତା କରିଆସୁଥିଲେ ତାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଉଦ୍ୟମ ଚଳାଇଲେ । ଗୋଟିଏ ପୁରୁଣା ସିରିଞ୍ଜ ଓ ତାଙ୍କ ସ୍ତ୍ରୀଙ୍କ ପାଖରେ ଥିବା କେତେକ ବ୍ୟବହାର୍ଯ୍ୟ ଯନ୍ତ୍ରପାତି ନେଇ ଯେ ତାଙ୍କର ପରୀକ୍ଷା ଚଳାଇବା ପରେ ଗୋଟିଏ ଇଞ୍ଜିନର ନମୁନା ତିଆରି କଲେ । ଅଲଗା କଣ୍ଡେନସର୍ ବ୍ୟତୀତ ପରୀକ୍ଷା ଚଳାଉ ଚଳାଉ ଆଉ ଗୋଟାଏ କଥା ତାଙ୍କ ମଥାରେ ପୁରିଗଲା ।

ପିଷ୍ଟନକୁ ତଳୁ ଉଠେଇବା ପକେଇବା କାମପାଇଁ ବାୟୁର ଚାପ ଉପରେ ନିର୍ଭର ନ କରି ସେ ସିଲିଣ୍ଡରର ଉପରଟିକୁ ବନ୍ଦ ରଖିଲେ । ବାଷ୍ପର ଚାପଦ୍ୱାରା ହିଁ ପିଷ୍ଟନକୁ ଉଠାଇବା କାମ ସାଧିତ ହେଲା । ଏହି ଇଂଜିନର ନମୁନାଟି ଜେମ୍ସ ଯାହା ପ୍ରଥମେ ତିଆରି କରିଥିଲେ ବର୍ତ୍ତମାନ ସୁଦ୍ଧା ଦକ୍ଷିଣ କେନସିଙ୍ଗଟନ ବିଜ୍ଞାନ ମିଉଜିୟମରେ ସଂରକ୍ଷିତ ଅଛି । ଏହା ସୁନ୍ଦର ଭାବରେ କାର୍ଯ୍ୟ କଲା ।

ନମୁନାଟି ସିନା ତିଆରି କରିଦେଲେ, ପୁରାପୁରି ଇଞ୍ଜିନଟିଏ କରିବା ତାଙ୍କ ପକ୍ଷରେ ବଡ଼ କଷ୍ଟକର ବ୍ୟାପାର ହୋଇପଡ଼ିଲା । ନମୁନା କରିବା ବେଳେ ଯେଉଁ ଅସୁବିଧା ସେ ଅନୁଭବ କରୁ ନ ଥିଲେ, ଇଞ୍ଜିନଟି ପୂରା କରିବା ବେଳକୁ ସେ ଅସୁବିଧା ବିଶେଷ ଭାବରେ ଅନୁଭୂତ ହେଲା । ବାରମ୍ବାର ପରୀକ୍ଷା କରି କରି ଯାହା ଯେତେବେଳେ ଭୁଲ ଦେଖାଗଲା, ସଂଶୋଧନ କରିବାକୁ ଲାଗିଲେ । ଏହି ପରୀକ୍ଷା ବେଳେ ରୋଜଗାର ପୁରାପୁରି ବନ୍ଦ ହୋଇଥିବା ଫଳରେ ଭୀଷଣ ଋଣଗ୍ରସ୍ତ ହୋଇପଡ଼ିଲେ । ଡକ୍ଟର ବ୍ଲାକ କେବଳ ତାଙ୍କୁ ଏକ ହଜାର ପାଉଣ୍ଡ ଦେଇଥିଲେ । ସ୍କଟ୍ସ ଦେଶର ଲୋକମାନେ ସାଧାରଣତଃ ମିତବ୍ୟୟୀ । ଜେମ୍ସ ସ୍କଟ ଦେଶର ଲୋକ ଭାବରେ ଟଙ୍କା ଧାର କରିବାକୁ ଭଲ ପାଉ ନ ଥିଲେ । କିନ୍ତୁ ବିନା ଅର୍ଥରେ ଇଞ୍ଜିନ ନିର୍ମାଣ କରିବା ଅସମ୍ଭବ ହୋଇ ଉଠିବା ହେତୁ ସେ ଋଣ କରିବାକୁ ବାଧ୍ୟ ହେଲେ ।

ଏକ ଦିଗରେ ବହୁ ପରିମାଣରେ ଋଣ ଅନ୍ୟ ଦିଗରେ କେତେକ ଇଂଜିନ୍‌ଗତ ତ୍ରୁଟିକୁ ସୁଧାରି ନ ପାରିବା ହେତୁ ସେ ଭାରି ବିଚଳିତ ହୋଇ ପଡ଼ିଥିଲେ । ଏପରିକି ଥରେ ଥରେ ସେ ମୁଣ୍ଡରେ ହାତ ଦେଇ ବସିପଡ଼ନ୍ତି । ଭାବନ୍ତି, ତାଙ୍କର ସମସ୍ତ ଉଦ୍ୟମ ପଣ୍ଡ ହୋଇଯିବ କି ? ଏହି ଚିନ୍ତାରେ ତାଙ୍କର ବୟସ ବେଶୀ ହୋଇ ନ ଥିଲେ ମଧ୍ୟ ତାଙ୍କର ଅଣ୍ଟା ନଇଁଆସିଲା, ଗାଲ ପଶିଗଲା, ସବୁବେଳେ ଭାରି କ୍ଳାନ୍ତ ଦେଖାଗଲେ ।

ସେତେବେଳକୁ ତାଙ୍କ ନିଜର ପରିବାର ବଢ଼ ଉଠିଥାଏ । ସମସ୍ତେ ତାଙ୍କ ଉପରେ ନିର୍ଭର କରୁଥିଲେ । କ୍ରମଶଃ ତାଙ୍କର ଦୁରବସ୍ଥା ବଢ଼ିଚାଲିଲା । ଅବସ୍ଥା ଏତେ ଶୋଚନୀୟ ହୋଇଉଠିଲା ଯେ, ନିରୁପାୟ ହୋଇ ସେ ସ୍ଥିର କଲେ ଇଞ୍ଜିନ୍‌ଟି ଯେଉଁ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇଛି, ସେମିତି ଥାଉ । ସେହି ଅବସ୍ଥାରେ ହିଁ ସେ ଇଞ୍ଜିନ୍‌ଟିର ମାଲିକ ସ୍ୱତ୍ୱର ଦୁଇ ତୃତୀୟାଂଶ ଷ୍ଟିରଲିଙ୍ଗସାୟାର ଲୁରା ରେଳ କାରଖାନାର ମାଲିକ ଡକ୍ଟର ରେବେକଙ୍କୁ ବିକି ଦେଲେ । ଇଞ୍ଜିନ୍‌ଟି ପୁରାପୁରି ତିଆରି କରିବା ପରେ ତାଙ୍କ କାରଖାନାରେ ଜମି ରହୁଥିବା ଜଳ ନିଷ୍କାସନ କାମରେ ବ୍ୟବହାର ଲାଗି ସେ ସ୍ଥିର କରିଥିଲେ । ଏହାଦ୍ୱାରା ସେ କିଛି ଭଲ କାମ କଲେ ବୋଲି ବିଚାରୁ ନ ଥିଲେ । ତଥାପି ଡକ୍ଟର ବ୍ଲାକଙ୍କ ଠାରୁ ଆଣିଥିବା ଋଣତକ ପରିଶୋଧ ହୋଇ ପାରିଲା ।

ଋଣ ପରିଶୋଧ ସିନା ସରିଲା ହେଲେ ଘରର ଦୁରବସ୍ଥା ସରିଲା ନାହିଁ । ପରିବାର ବୃଦ୍ଧି ସଙ୍ଗେ ସଙ୍ଗେ ଆବଶ୍ୟକତା ମଧ୍ୟ ବଢ଼ଲା, ପିଲାମାନଙ୍କୁ ଅନ୍ତତଃ ଖୁଆଇ ପିଆଇ ସୁଖରେ ରଖିବାଲାଗି ସେ ରୋଜଗାରର ପନ୍ଥା ଧରି ବସିଲେ । ସେ ସ୍କଟଲାଣ୍ଡର ବିଭିନ୍ନ ସ୍ଥାନରେ ସର୍ଭେ କାମରେ ନିଯୁକ୍ତ ହେଲେ । ଯନ୍ତ୍ରପାତି ତିଆରି ଓ ମରାମତି କାମରେ ତାଙ୍କର ଯାହା ବା ଅଭିଜ୍ଞତା ଥିଲା, ସର୍ଭେ କାମରେ କେବେ କରିନଥିଲେ । କିନ୍ତୁ କିଛିଦିନ ପରେ ଏ କାମରେ ସେ ଖୁବ୍ ପ୍ରଶଂସା ଲାଭ କରିପାରିଥିଲେ ।

କୌଣସି ରାସ୍ତାଘାଟ କରାଯିବା ପୂର୍ବରୁ ପାର୍ଲିଆମେଣ୍ଟରେ ଏକ ସ୍ୱତନ୍ତ୍ର ଆଇନ୍ ଗୃହୀତ ହୋଇଥାଏ । ପାର୍ଲିଆମେଣ୍ଟରେ ଆଇନ ପ୍ରବର୍ତ୍ତନ ହେବା ପୂର୍ବରୁ ହାଉସ ଅଫ୍ କମନସ୍‌ର ଏକ ସ୍ୱତନ୍ତ୍ର କମିଟି ଦ୍ୱାରା ଯୋଜନାର ବିଚାର ହୋଇଥାଏ । ଫୋର୍ଥ ଏବଂ କ୍ଲାଇଡ୍ ନଦୀ ମଧ୍ୟରେ ସଂଯୋଗ ରକ୍ଷା ଲାଗି ଜେମ୍‌ସ ମାପଚୁପ କରୁଥିବା ବେଳେ ଜଣେ ବିଶେଷଜ୍ଞ ଭାବରେ ଏହି ଯୋଜନା ସମ୍ପର୍କରେ ହାଉସ ଅଫ୍ କମନସ କମିଟି ସହିତ କଥାବାର୍ତ୍ତା କରିବା ପାଇଁ ଜେମ୍‌ସ ଓ୍ୱାଟଙ୍କୁ ଡକାଯାଇଥିଲା । କମିଟି ସଭ୍ୟମାନଙ୍କ ସହିତ କଥାବାର୍ତ୍ତା କଲାପରେ ସେ ସେମାନଙ୍କୁ ବୋକା ବୋଲି ଭାବିଥିଲେ । ତେବେ ସେ ଯାହାହେଉ ଲଣ୍ଡନ ଯିବାଦ୍ୱାରା ନିଜର ବହୁତ ଉପକାର ହୋଇପାରିଥିଲା । ତାଙ୍କ ଜୀବନରେ ଏଭଳି ଅଭିଜ୍ଞତା ପ୍ରଥମ ।

ନିଜ ଜନ୍ମସ୍ଥାନ ସ୍କଟଲାଣ୍ଡକୁ ଫେରିଆସିବା ପରେ ବରମିଙ୍ଗହାମରେ ପ୍ରତିଷ୍ଠିତ ଏକ ବିରାଟ କାରଖାନା ପରିଦର୍ଶନ କରିଥିଲେ । ୯ ହଜାର ପାଉଣ୍ଡରେ କେତେକ ବର୍ଷ ତଳେ ମଥ୍ୟୁ ବୋଲଟନ ଏହାକୁ ଗଢ଼ିଥିଲେ । ଇଂଲଣ୍ଡ ଇତିହାସରେ ଏହାହିଁ ସର୍ବପ୍ରଥମ ବୃହତ୍ତମ କାରଖାନା । ହଜାର ହଜାର ଲୋକ କାମ କରୁଥିଲେ । ଇସ୍ପାତ କଂସା ପ୍ରଭୃତିର ଜିନିଷପତ୍ର ତିଆରି ହେଉଥିଲା । ପୁରୁଣାକାଳିଆ ଘଣ୍ଟା, କାଚ ଜିନିଷ ମଧ୍ୟ ତିଆରି ହେଉଥିଲା । କାରଖାନାଟିକୁ ଦେଖି ଜେମ୍‌ସ ଭାରି ଖୁସି ହୋଇପାରୁଥିଲେ କିନ୍ତୁ ଏଠି ମଧ୍ୟ ଗୋଟିଏ ଗୁରୁତର ତ୍ରୁଟି ତାଙ୍କ ଆଖି ଆଗରେ ପଡ଼ିଥିଲା । କାରଖାନା ଯନ୍ତ୍ରପାତି ସବୁ

ଗାଁ ଗହଳରେ ଅଟାକଳ ଗୁଡ଼କ ଚାଲିବା ଭଳି ଜଳଚକ୍ର ଦ୍ୱାରା ଚାଳିତ ହେଉଥିଲା । କିନ୍ତୁ ପାଣି ନଥିବା ବେଳେ ଜଳସ୍ତର କମିଯିବା ହେତୁ ଉତ୍ପାଦନ ମଧ୍ୟ ବନ୍ଦ ହୋଇଯାଏ । ତାଙ୍କ ବାଷ୍ପୀୟ ଇଞ୍ଜିନକୁ ଏଠି କାମରେ ଲଗାଇଲେ ଭଲ ଫଳ ହେବ ବୋଲି ଜେମ୍ସ ମନେ ମନେ ଭାବିଲେ । ସେ ଏ ସମ୍ପର୍କରେ କାରଖାନାର ବୋଲଟନଙ୍କ ସହକାରୀ ଡକ୍ଟର ସ୍ମଲଙ୍କୁ ସାକ୍ଷାତ କରି ତାଙ୍କର ଉଦ୍ଦେଶ୍ୟ ଜଣାଇଲେ । ଏହା ଶୁଣି ଡକ୍ଟର ସ୍ମଲ ଖୁସି ହୋଇ ସେଭଳି ଇଞ୍ଜିନ ଲାଗି ତାଙ୍କୁ ବରାଦ ଦେଲେ । ୧୭୬୮ରେ ପୁଣି ଥରେ ସେ ଏହି କାରଖାନାକୁ ପରିଦର୍ଶନ କରିବାକୁ ଯାଇଥିବା ବେଳେ ବୋଲଟନଙ୍କୁ ଭେଟିଥିଲେ । ବୋଲଟନ ସାହେବ ବଡ଼ ଉଦାର ହୃଦୟର ଲୋକ ଥିଲେ । ସେ କୌଣସି କଥାରେ ଭାଙ୍ଗି ପଡ଼ୁ ନ ଥିଲେ । ଜେମ୍ସ ଓ୍ୱାଟଙ୍କର ନିଜ ଇଞ୍ଜିନ ପ୍ରତି ଆସ୍ଥା ଥିଲେ ମଧ୍ୟ ଖରାପ ସ୍ୱାସ୍ଥ୍ୟ ଏବଂ ଦାରିଦ୍ର୍ୟ ହେତୁ ସେ ସବୁବେଳେ ମାନ୍ଦା ଦେଖାଯାଉଥିଲେ । କୌଣସି ଦାୟିତ୍ୱ ମୁଣ୍ଡାଇବା ମାତ୍ରେ ତୁଲାଇ ପାରିବେ କି ନାହିଁ ସେ ବିଷୟରେ ବହୁ ଚିନ୍ତା କରୁଥିଲେ । ବୋଲଟନ ସାହେବଙ୍କ ସହିତ ତାଙ୍କର ଗଭୀର ସମ୍ପର୍କ ସ୍ଥାପିତ ହୋଇଥିଲା । ସେ ଦୁହେଁ ପରସ୍ପରକୁ ଏତେ ଭଲ ପାଇଗଲେ ଯେ, ଏହା ପରଠାରୁ ଯାହା କରିବେ, ମିଳିମିଶି କରିବେ ବୋଲି ସ୍ଥିର କଲେ । ଜେମ୍ସଓ୍ୱାଟଙ୍କ ଇଞ୍ଜିନକୁ ମଧ୍ୟ ତାଙ୍କ କାରଖାନାରେ ଲଗାଇବା ପାଇଁ ବୋଲଟନ ସାହେବ ବିନା ଦ୍ୱିଧାରେ ରାଜି ହେଲେ । ଇଞ୍ଜିନଟିକୁ ସଂପୂର୍ଣ୍ଣ କରିବା ପାଇଁ ସଙ୍ଗେ ସଙ୍ଗେ ଏକ ଛୋଟ କାରଖାନା ଘର ନିର୍ମାଣର ବ୍ୟବସ୍ଥା ହୋଇଗଲା । ଇଞ୍ଜିନଟି ସମସ୍ତ ପ୍ରକାର ଯନ୍ତ୍ରପାତି ସହିତ ସୁରକ୍ଷିତ ହୋଇଯିବା ପରେ ବୋଲଟନ ସାହେବ ତାଙ୍କୁ ବିକ୍ରୀ କରିବାକୁ ଇଚ୍ଛା ପ୍ରକାଶ କଲେ, କିନ୍ତୁ ଜେମ୍ସ ଯେ ଆଗରୁ ନିଜର ଅଧିକାରର ଦୁଇ ତୃତୀୟାଂଶ ଡକ୍ଟର ରୋବକଙ୍କୁ ବିକ୍ରୀ କରି ସାରିଛନ୍ତି । ଏକଥା ତାଙ୍କୁ ଜଣାନଥିଲା । ବୋଲଟନ ଡକ୍ଟର ରୋବକଙ୍କୁ ବିକିବାପାଇଁ ସ୍ୱୀକୃତି ଦେଲେ ନାହିଁ ।

ଡକ୍ଟର ରୋବକ ମଧ୍ୟ ତାଙ୍କୁ ବିକିବା ପାଇଁ ଅନୁମତି ଦେଲେ ନାହିଁ । ଶେଷରେ ଜେମ୍ସ ମଧ୍ୟ ଯାଇଁ ତାଙ୍କୁ ଅନୁରୋଧ କଲେ, ମାତ୍ର ଡକ୍ଟର ରୋବାକ କିଛି ଶୁଣିଲେ ନାହିଁ । ସେତେବେଳକୁ ଜେମସ ମାପଚୁପ କାମରେ ବ୍ୟସ୍ତ ଥାଆନ୍ତି । ହାମିଲଟନଠାରେ କ୍ଲାଇଡ ନଦୀ ଉପରେ ପୋଲ ତିଆରି ତାଙ୍କରି ଦ୍ୱାରା ସମ୍ଭବ ହୋଇଥିଲା । ଆଇର, ଗ୍ଲାସଗୋ, ଗାନଚ କ୍ଲାଇଡ ଓ ଫୋକ ନଦୀରେ ବନ୍ଦର ନିର୍ମାଣ କାର୍ଯ୍ୟରେ ମଧ୍ୟ ସେ ସାହାଯ୍ୟ କରିଥିଲେ । ବିଖ୍ୟାତ କାଲେଡୋନିୟାନ କେନାଲ ନିର୍ମାଣ ମଧ୍ୟ ତାଙ୍କର ଅନ୍ୟ ଏକ ପ୍ରଶଂସନୀୟ କାର୍ଯ୍ୟ । ଅବସର ସମୟରେ ସେ ଦୂରତା ପରିମାପ ଲାଗି ମିକ୍ରୋମିଟର, ଉଚ୍ଚତା ପରିମାପକ ଯନ୍ତ୍ର (କ୍ୱାଡ୍ରାଣ୍ଟ) ଅଙ୍କନ ଯନ୍ତ୍ର ଆଦି ତିଆରି କରି କିଛି କିଛି ରୋଜଗାର କରୁଥିଲେ ।

୧୭୭୩ ମସିହାର ଏକ ଘଟଣା ତାଙ୍କୁ ସବୁଠାରୁ ବେଶୀ ଆଘାତ ଦେଇଥିଲା ।

କାଲେଡୋନିୟାନ୍ କେନାଲ କାମ ଚାଲିଥିବା ବେଳେ ତାଙ୍କର ଗୋଟିଏ ପିଲା ଜନ୍ମ ହୋଇଛି ଖବର ଆସିଲା । ସେ ଘରକୁ ଯାଇ ପହଞ୍ଚିଲା ବେଳକୁ ପିଲା ସହିତ ମା'ର ମଧ୍ୟ ମୃତ୍ୟୁ ହୋଇଯାଇଥିଲା । ଜେମ୍ସ ସାଙ୍ଗରେ ଗୋଟିଏ ପୁଅ ଓ ଗୋଟିଏ ଝିଅକୁ ଧରି ଫେରିଲେ । ପିଲା ଦିଓଟିଙ୍କୁ ଖୁବ୍ ଆଦର ସ୍ନେହ କରୁଥିଲେ ।

ସେହି ବର୍ଷ ତାଙ୍କର ପୋଷାକ ମଧ୍ୟ କପର୍ଦ୍ଦକ ଶୂନ୍ୟ ହୋଇପଡ଼ିଥିଲେ । ସେ ଏତେ ଅଭାବଗ୍ରସ୍ତ ହୋଇ ପଡ଼ିଲେ ଯେ, ୱାଟଙ୍କ ଇଞ୍ଜିନ୍‌ରେ ତାଙ୍କର ଯେଉଁ ଅଂଶ ଥିଲା ତାହା ମଧ୍ୟ ବିକିଦେଲେ । ଏହି ଅଂଶତକ ବୋଲଟନ ସାହେବ କିଣିବା ହେତୁ ତାଙ୍କ ସହିତ ମିଶି ବ୍ୟବସାୟ କରିବା ପାଇଁ ଜେମ୍ସଙ୍କ ପକ୍ଷରେ ସୁବିଧା ହୋଇଗଲା । ୧୭୭୪ ବେଳକୁ ତାଙ୍କର ଅବସ୍ଥା ସ୍ୱଚ୍ଛଳ ହୋଇ ଯାଇଥିଲା । ସେ ତାଙ୍କ ପରିବାରକୁ ନେଇ ବରମିଙ୍ଗହାମକୁ ନେଇ ଆସିଲେ ।

ସେତେବେଳକୁ ଜେମ୍ସ ୱାଟଙ୍କର ବୟସ ୩୮ ବର୍ଷ । ଗତ ୧୧ ବର୍ଷ ଧରି ସାଧନା ଚଳାଇଥିଲେ ମଧ୍ୟ ଗୋଟିଏ ପୂର୍ଣ୍ଣାଙ୍ଗ ଇଞ୍ଜିନ୍ ପ୍ରସ୍ତୁତ କରିବା ପାଇଁ ସେ ସକ୍ଷମ ହୋଇ ପାରି ନ ଥିଲେ । ଏଣୁ ସେ ବ୍ୟବସାୟ ସବୁ ଛାଡ଼ିଦେଇ ଇଞ୍ଜିନ୍ କାମରେ ଲାଗିପଡ଼ିଲେ । ପୁଣି ପରୀକ୍ଷା ଚାଲିଲା । ପୁଣି ଭୁଲ, ସିଲିଣ୍ଡର ବୃତ୍ତାକୃତି ହୋଇଥିବାରୁ ଇଞ୍ଜିନଟି ଭଲ ଭାବରେ ଚାଲିପାରୁ ନାହିଁ ବୋଲି ତାଙ୍କର ଧାରଣା ହେଲା । ତାଙ୍କର ଅଂଶୀଦାର ବୋଲଟନ ସାହେବ ସଙ୍ଗେ ସଙ୍ଗେ ଇସ୍ପାତ ପ୍ରସ୍ତୁତକାରୀ ଯନ୍ତ୍ର ଉଇଲକିନସନଙ୍କ ଠାରୁ ଜେମ୍ସଙ୍କ ବରଦ ଅନୁଯାୟୀ ସିଲିଣ୍ଡରଟିଏ ମଗାଇ ଦେଲେ ।

ଏହି ସିଲିଣ୍ଡର ସାହାଯ୍ୟରେ ସୁନ୍ଦର ଏକ ଇଞ୍ଜିନ ଗଢ଼ ଉଠିଲା । ବୋଲଟନ ସାହେବଙ୍କ ସଙ୍ଗେ ବ୍ୟବସାୟ ଆରମ୍ଭ ହୋଇଗଲା । ଗୋଟିକ ପରେ ଗୋଟିଏ ଇଞ୍ଜିନ ତିଆରି କରିବା ଲାଗି ଆୟୋଜନ ଚାଲିଲା । ଏହି ଇଞ୍ଜିନର ପ୍ରଥମ ଗ୍ରାହକ ହେଲେ କର୍ଣ୍ଣ-ୱାଲ ଟିଣ ଖଣି କମ୍ପାନୀ । ପୁରୁଣା ଇଞ୍ଜିନ ବ୍ୟବହାରରେ ନାନା ଅସୁବିଧା ରହିଥିବା ହେତୁ ଏଭଳି ପରିସ୍ଥିତି ଆସି ପହଞ୍ଚିଲା ଯେ କେତୋଟି ଖଣିର କାମ ପୂରାପୂରି ବନ୍ଦ ହୋଇଗଲା, କିନ୍ତୁ ଏହି କମ୍ପାନୀର ଲୋକଙ୍କ ଆଚରଣ ଏବଂ ବ୍ୟବହାର ଭଲ ନଥିବା ହେତୁ ଜେମ୍ସୱାଟ ସେମାନଙ୍କୁ ଗୋଟାଏ ଖରାପ ଇଂଜିନ ଧରାଇ ଦେଲେ । ଇଞ୍ଜିନଟି ଯଦି ଖରାପ ନଥିଲା, ତଥାପି ସେ ବସାଇବାରେ ଟିକେ ଏପଟ ସେପଟ କରି ଦେଇଥିବାରୁ ଦିନ-ରାତି ଖାଲି ଜୋରରେ ଶବ୍ଦ ହେଲା । କିନ୍ତୁ ଉଇଲିୟମ ମରଡକ ନାମରେ ଜଣେ କର୍ମଚାରୀ ଇଞ୍ଜିନିଟିକୁ ଦେଖି ଦେଖି କିଭଳି ଭାବରେ ଚଳାଇବାକୁ ହେବ ଜାଣିପାରିଲେ । ସେ ମଧ୍ୟ ସ୍କଟ ଦେଶର ଲୋକ । ଜେମ୍ସ ତାଙ୍କୁ ନିଜର ସହକାରୀ ଭାବରେ ଗ୍ରହଣ କଲେ । ତା ପରଠାରୁ ତାଙ୍କର ଆଉ ଟିଣ କମ୍ପାନୀ କର୍ତ୍ତୃପକ୍ଷଙ୍କ ସହିତ ଆଉ କୌଣସି ମନାନ୍ତର ରହିଲା ନାହିଁ ।

ଜେମ୍ସ ୱାଟଙ୍କ ଇଞ୍ଜିନର ପ୍ରଂଶସା ବଢ଼ିଲା ତାଙ୍କ ଇଂଜିନ ସାହାଯ୍ୟରେ ବହୁତ ନିମ୍ନ ସ୍ତରରେ ଜମିରହୁଥିବା ଜଳ ଉପରକୁ ଉଠେଇ ହେଲା । ପୂର୍ବ କଳକବ୍ଜାରେ ଯେତେ ଖର୍ଚ୍ଚ ଲାଗୁଥିଲା ତାହାଠାରୁ କମ ଖର୍ଚ୍ଚ ମଧ୍ୟ ଲାଗିଲା ।

ଟିଣ ଖଣିର ଏହି ଇଞ୍ଜିନର ସଫଳାତା କ୍ରମଶଃ ଲୋକମୁଖରେ ପ୍ରଚରିତ ହେବା ମାତ୍ରେ ବହୁତ ଗ୍ରାହକ ଜୁଟିଲେ । ଏପରି କି ଫ୍ରାନସ ଭଳି ବାହାର ଦେଶରୁ ମଧ୍ୟ ବରଦ ଆସିଲା । ବୋଲଟନ ବ୍ୟବସାୟରେ ଭବିଷ୍ୟତ ସଫଳତା ଦେଖି ଖୁସି ହୋଇଗଲେ ।

ଏହାପରେ ୧୭୭୬ ରେ ପୁଣି ବିବାହ କଲେ । ତାଙ୍କ ଦ୍ୱିତୀୟ ସ୍ତ୍ରୀଙ୍କ ନାମ ମାକାଗେଗର । ଏହି ଦ୍ୱିତୀୟ ସ୍ତ୍ରୀଙ୍କ ଗର୍ଭରୁ ଦୁଇଟି ସନ୍ତାନ ଗ୍ରେଗରୀ ଓ ଜେସିଙ୍କ ଜନ୍ମ ।

ଦ୍ୱିତୀୟ ବିବାହର ପ୍ରଥମ ଦଶବର୍ଷ ତାଙ୍କ ଜୀବନରେ ଆନନ୍ଦ ଉଲ୍ଲାସରେ କଟିଥିଲା । ଇଞ୍ଜିନ ବ୍ୟତୀତ ଅନ୍ୟ କେତୋଟି ଛୋଟକାଟର କଳକବ୍ଜା ଏହି ସମୟ ଭିତରେ ଉଦ୍ଭାବନ କରିବାକୁ ସେ ସକ୍ଷମ ହୋଇଥିଲେ । କପି ମେସିନ୍ ତାଙ୍କର ଅନ୍ୟତମ ଉଦ୍ଭାବନ । ଗୋଟିଏ କ'ଣ ଲେଖିସାରିବା ପରେ ତା'ର ନମୁନା ରଖିବା ଲାଗି ପୁଣି ଆଉ ଗୋଟିଏ ଲେଖିବା ଲାଗି କଷ୍ଟ ହେବା ଯୋଗୁଁ ସେ ଏହି ଅସୁବିଧା ଦୂର କରିବା ପାଇଁ ଇଞ୍ଜିନ କାମ ଛାଡ଼ି କପିମେସିନ୍ ତିଆରି କଲେ । ସେତେବେଳେ ଟାଇପ ମେସିନ ହୋଇ ନ ଥାଏ,ତେଣୁ ଦୁଇବା ତତୋଽଧିକ ଜିନିଷ ଏକାଠି ଲେଖା ହୋଇ ଉଠିଲାଭଳି ସେ ଗୋଟିଏ କଳ ପ୍ରସ୍ତୁତ କଲେ । ଏହାର ନାମ ହେଉଛି "ବାଇଗ୍ରାଫର" । ଏହାଦ୍ୱାରା ଲେଖିବା ଲୋକର ସମୟ ବଂଚିଲା, ପରିଶ୍ରମ ମଧ୍ୟ କମ ହେଲା ।

ଏହି ବାଇଗ୍ରାଫ୍ର କ୍ରମଶଃ ଏତେ ଜନପ୍ରିୟ ହୋଇଉଠିଲା ଯେ, ଯୋଗାଇବା ସମ୍ଭବ ହୋଇପାରିଲା ନାହିଁ । ସବୁ ଅଫିସମାନଙ୍କରେ ଏହି ଯନ୍ତ୍ର ଗୋଟିଏ ଲେଖାଏଁ ରହିଲା । ଏହି ବ୍ୟବସାୟରେ ୱାଟ ସବୁଠାରୁ ବେଶୀ ଅର୍ଥ ରୋଜଗାର କରିପାରିଥିଲେ ।

କ୍ଲେରିନ୍ ବ୍ଲିଚିଂ ପ୍ରଣାଳୀ, ତରଳ ପଦାର୍ଥର ଓଜନ ପରିମାପକ ଯନ୍ତ୍ର ଆଦି ମଧ୍ୟ ଉଦ୍ଭାବନ କରିଥିଲେ । ଅବସର ସମୟରେ ହିଁ ସେ ଏହି ଛୋଟ ଛୋଟ କଳକବ୍ଜା ଉଦ୍ଭାବନରେ ମନଯୋଗ ଦେଇଥାନ୍ତି ।

୧୭୮୧ ରେ ୱାଟ ଏପରି ଏକ ଇଂଜିନ୍ ନିର୍ମାଣ କଲେ ଯେଉଁଥିରେ ପାଣିକି ପମ୍ପକରି ଉଠାଇବା ଛଡ଼ା ଚୁଲିକୁ ଫୁଙ୍କିବା କାମ ମଧ୍ୟ ହୋଇପାରିଲା । ଏହାକୁ 'ରେଟେଟିଭ' ଇଞ୍ଜିନ ବୋଲି କହୁଥିଲେ । ପୃଥିବୀ ଇତିହାସରେ ଏହି ଉଦ୍ଭାବନ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହେଲା । ଏହି ଇଂଜିନକୁ ପୂର୍ଣ୍ଣାଙ୍ଗ କରିବା ଲାଗି ତାଙ୍କୁ କଠୋର ପରିଶ୍ରମ କରିବାକୁ ପଡ଼ିଥିଲା ।

ୱାଟଙ୍କ ମୃତ୍ୟୁବେଳକୁ ଲର୍ଡ ଜାଫ୍ରି ଲେଖିଥିଲେ—"ଜେମ୍ସ ୱାଟ ଖାଲି ଗୋଟିଏ ଇଂଜିନ୍ ଆମକୁ ଦେଇଗଲେ ନାହିଁ, ଆମର ସୁଖ ସମୃଦ୍ଧି ଲାଭ ଏକ ପନ୍ଥା

ଖୋଲି ଦେଇଗଲେ । ସେ ଯେଉଁ ଇଞ୍ଜିନ୍ ପ୍ରସ୍ତୁତ କରିଦେଇ ଯାଇଛନ୍ତି, ସେଥିରେ ଯେକୌଣସି ଜିନିଷକୁ ଭାଙ୍ଗିହେବ, ପୁଣି ଯୋଡ଼ ହେବ, ଯେକୌଣସି ଜିନିଷ ଭିଡ଼ହେବ, ସୂତାଭଳି ସୂକ୍ଷ୍ମ ଜିନିଷକୁ ମଧ୍ୟ ବୁଣିହେବ । ଏକ ବିରାଟ ସୁଦ୍ଧ ଜାହାଜକୁ ଉପରକୁ ଉଠେଇ ହୋଇପାରିବ, ଲୁଗା ବୁଣିହେବ, ଇସ୍ପାତ ଭଳି କଠିନ୍ ଜିନିଷକୁ ମଧ୍ୟ ଫିତା ଭଳି ପତଳା କରିହେବ । ସମୁଦ୍ରର ଉତ୍ତାଳ ତରଙ୍ଗମାଳା ମଧ୍ୟରେ ଜାହାଜକୁ ମଧ୍ୟ ରଖିହେବ । ମଣିଷର ଦୁର୍ବଳ ହାତକୁ ଜେମ୍ସ ୱାଟ ପ୍ରବଳ ଶକ୍ତି ଯୋଗାଇ ଦେଇ ଯାଇଛନ୍ତି । ଏଭଳି ମହାଦାନ ମଣିଷ ଇତିହାସରେ କେବେ କେହି ଦେଇ ନ ଥିଲା ।

ଏହି ଇଞ୍ଜିନର ଅନ୍ୟଏକ ତ୍ରୁଟି ଥିଲା ଯେ, ଏହା ଗତିଶୀଳ ନ ଥିଲା । ଅବଶ୍ୟ ୱାଟ ଏଭଳି ଇଞ୍ଜିନ୍ ତିଆରି କରିବାକୁ ଚିନ୍ତା କରିଥିଲେ, ମାତ୍ର ବୟସ ଅଧିକ ହୋଇଯାଇ ଥିବାରୁ ନିଜେ ସେ ତିଆରି କରି ନ ପାରି କିପରି ପ୍ରସ୍ତୁତ ହୋଇପାରିବ, ତାହା ଲେଖିଦେଇ ଯାଇଥିଲେ । ଜର୍ଜ ଷ୍ଟିଫେନସନ ତାଙ୍କପରେ ପ୍ରଥମ ବାଷ୍ପୀୟ ରେଳଇଞ୍ଜିନ ତିଆରି କଲେ ।

୧୭୯୦ରେ ସେ କାମ ଛାଡ଼ି ହାରପର ପାର୍ବତ୍ୟ ପ୍ରଦେଶରେ ସ୍ଥାୟୀ ଭାବରେ ବସବାସ କଲେ । ସେତେବେଳକୁ ତାଙ୍କୁ ୫୪ ବର୍ଷ ବୟସ ହୋଇଥିଲା । ହାଣ୍ଡସ୍ ଓର୍ଦ୍ଧ୍ୟ ଠାରେ ୫୦ ଏକର ଜମି କିଣି ଏକ ସୁନ୍ଦର ଘର ନିର୍ମାଣ କଲେ । ଘର ଚାରିପାଖରେ ଏକ ମନୋରମ ଉଦ୍ୟାନ ତିଆରି କଲେ । ଏହାପରେ ପୁଣି ସେ ଦଶ ବର୍ଷକାଳ ଇଞ୍ଜିନ କାମରେ ମଧ୍ୟ କଟାଇଥିଲେ ।

୧୮୦୦ରେ ୱାଟ ଏବଂ ବୋଲଟନ ଦୁହେଁଯାକ ବ୍ୟବସାୟରୁ ଓହରି ଯାଇ ବ୍ୟବସାୟର ଦାୟିତ୍ୱ ପୁଅମାନଙ୍କ ହାତରେ ଦେଇଦେଲେ । ୱାଟ ନିଜ ଘରେ ବସିବା ସମୟ ମଧ୍ୟରେ ଗୋଟିଏ ଛୋଟ କାରଖାନା କରି ସେଥିରେ ସବୁବେଳେ କାର୍ଯ୍ୟବ୍ୟସ୍ତ ରହୁଥିଲେ । ତାଙ୍କର ସଙ୍ଗୀତ,ଚିକିତ୍ସା ଶାସ୍ତ୍ର, ଆଇନ୍ ଶାସ୍ତ୍ର ଓ ଘଣ୍ଟା କାମ ଆଦି ବିଷୟରେ ଆଗ୍ରହ ଥିଲା ସବୁଠାରୁ ଅଧିକ । ଥରେ ଥରେ ପଢ଼ୁ ପଢ଼ୁ ରାତି ପାହିଯାଏ । ଏପରିକି ଶୋଇବାକୁ ମନେପଡ଼େ ନାହିଁ ।

ଲୁନାର ସୋସାଇଟିର ଜଣେ ଖ୍ୟାତନାମା ସଭ୍ୟ ଭାବରେ ତାଙ୍କର ଆଲୋଚନା ମଧ୍ୟ ସାରଗର୍ଭ ହେଉଥିଲା । ବହୁ ବିଶିଷ୍ଟ ଲୋକ ତାଂକ ଘରକୁ ଆସୁଥିଲେ ।

ମୃତ୍ୟୁ ବେଳକୁ ଜେମ୍ସୱାଟଂକର ବୟସ ହୋଇଥିଲା ୮୩ ବର୍ଷ । ମୃତ୍ୟୁର କେତେ ବର୍ଷ ଆଗରୁ ସେ ବିପୁଳ ସମ୍ମାନ ଲାଭ କରିପାରିଥିଲେ । ଲଣ୍ଡନ ଏବଂ ଏଡ଼ିନବର୍ଗର ଫେଲୋପଦ ଲାଭ କରି ପାରିଥିଲେ । ଗ୍ଲାସଗୋ ବିଶ୍ୱବିଦ୍ୟାଳୟର ଆଇନ୍ ଶାସ୍ତ୍ରରେ ତାଙ୍କୁ ଡକ୍ଟର ପଦବୀରେ ଭୂଷିତ କରିବା ଦ୍ୱାରା ସମଗ୍ର ଇଂଲଣ୍ଡରେ ତାଂକର

ସମ୍ମାନ ବୃଦ୍ଧି ପାଇଥିଲା । ଫ୍ରାନ୍ସର ବିଜ୍ଞାନ ଏକାଡେମୀର ସଦସ୍ୟଭାବରେ ତାଙ୍କୁ ଗ୍ରହଣ କରଯାଇ ଥିଲା । ଫ୍ରାନ୍ସର ଲୋକଂକ ବ୍ୟତୀତ ଏହି ପଦ କାହାରିକୁ କେବେ ମିଳି ନ ଥିଲା ।

ସେ ଗରିବ ଦୁସ୍ଥ ଛାତ୍ରମାନଂକର ପାଠପଢ଼ା ପାଇଁ ସାହାଯ୍ୟ କରୁଥିଲେ । ନିଜର ଜନ୍ମସ୍ଥାନ ଗ୍ରୀନକରେ ଏକ ବିଜ୍ଞାନ ପାଠାଗାର ଖୋଲିବା ଉଦ୍ଦେଶ୍ୟରେ ସେ ବହୁ ଅର୍ଥ ଦାନ କରିଥିଲେ । ବିଭିନ୍ନ ପାଠ୍ୟର ଉନ୍ନତି ଲାଗି ସେ ଗ୍ଲାସଗୋ ବିଶ୍ୱବିଦ୍ୟାଳୟ ପାଖିକୁ ଏକ ବାର୍ଷିକ ପୁରସ୍କାର ବିତରଣ ଲାଗି ଅର୍ଥ ବ୍ୟବସ୍ଥା କରିଦେଇ ଯାଇଥିଲେ ।

୧୮୧୯ ଅଗଷ୍ଟ ୧୯ ତାରିଖରେ ଜେମ୍ସ ୱାଟ ଚିରନିଦ୍ରା ଗ୍ରହଣ କଲେ । ପୂର୍ବ ଅନୁରୋଧ କ୍ରମେ ତାଂକ ମୃତ ଶରୀରକୁ ତାଂକର ସହଯୋଗୀ ବନ୍ଧୁ ବୋଲଟନଂକ ସମାଧି ପାଖରେ ସମାଧି ଦିଆଯାଇଥିଲା । କେତେ ବର୍ଷ ପରେ ତାଂକ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ୱେଷ୍ଟ ମିନିଷ୍ଟର ଏବ୍ଠାରେ ଏକ ସ୍ମୃତିସ୍ତମ୍ଭ ନିର୍ମାଣ କରଗଲା ।

—o—

# ବିଶ୍ୱବିଚିତ୍ରା

**କେନ୍ଦ୍ର ସରକାର (ଭାରତ)**

ରାଷ୍ଟ୍ରପତି – ଜ୍ଞାନୀ ଜୈଲ ସିଂହ

ଉପ-ରାଷ୍ଟ୍ରପତି – ଏମ. ହିଦାୟତ ଉଲ୍ଲା

**କେନ୍ଦ୍ର ମନ୍ତ୍ରୀମଣ୍ଡଳ**

ଶ୍ରୀମତୀ ଇନ୍ଦିରା ଗାନ୍ଧି – ପ୍ରଧାନ ମନ୍ତ୍ରୀ, ଆଣବିକ ଶକ୍ତି, ମହାକାଶ, ବିଜ୍ଞାନ ଓ କାରିଗରୀ ।

ମିଷ୍ଟର ପି.ଭି. ନରସିଂହ ରାଓ—ବୈଦେଶିକ ବ୍ୟାପାର

ମିଷ୍ଟର ପ୍ରଣବ କୁମାର ମୁଖାର୍ଜୀ—ଅର୍ଥ

ମିଷ୍ଟର ଆର. ଭେଙ୍କଟ ରମନ—ପ୍ରତିରକ୍ଷା

ମିଷ୍ଟର ପି. ସି. ସେଠି—ଘରୋଇ ମନ୍ତ୍ରୀ

ମିଷ୍ଟର ଏସ୍. ବି. ଚଉହନ—ଯୋଜନା

ମିଷ୍ଟର ଏ. ବି. ଏ. ଘାନଖାନ ଚୌଧୁରୀ—ରେଳ ବିଭାଗ

ମିଷ୍ଟର ବିଷମ ନାରାୟଣ ସିଂହ—ସିଭିଲ ସପ୍ଲାଇଜ

ମିଷ୍ଟର ପି· ଶିବଶଙ୍କର—ପେଟ୍ରୋଲିୟମ ଏବଂ ଶକ୍ତି

ମିଷ୍ଟର ଆର. ଏନ୍. ମିର୍ଧା—ସେଚ

ମିଷ୍ଟର ବସନ୍ତ ସାଠେ—ରସାୟନ ଓ ସାର

ମିଷ୍ଟର ଏନ୍. ଡ଼. ତିୱାରୀ—ଶିଳ୍ପ, ଇସ୍ପାତ ଓ ଖଣି

ମିଷ୍ଟର ବିଜୟ ଭାସ୍କର ରେଡ୍ଡ—ପର୍ଯ୍ୟଟନ ଓ ବିମାନ ଚଳାଚଳ

ମିଷ୍ଟର ବି. ଶଙ୍କରାନନ୍ଦ—ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ

ମିଷ୍ଟର ବୀରେନ୍ଦ୍ର ସିଂହ—କୃଷି ଓ ଉନ୍ନୟନ

ମିଷ୍ଟର ଜଗନ ନାଥ କୌଶଳ—ଆଇନ, ନ୍ୟାୟ ଓ କମ୍ପାନୀ ବ୍ୟାପାର

ମିଷ୍ଟର ବିଶ୍ୱନାଥ ପ୍ରତାପ ସିଂହ—କମର୍ସ

ମିଷ୍ଟର ଭଗବତ ଝା ଆଜାଦ—ବିମାନ ଚଳାଚଳ ।

ମିଷ୍ଟର ବୁଟା ସିଂହ—ପାର୍ଲିୟାମେଣ୍ଟ ବ୍ୟାପାର, ଖେଳ ଓ ବାସ

ଶ୍ରୀମତୀ ସେଲ କାଉଲ—ଶିକ୍ଷା ଓ ସମାଜ ମଙ୍ଗଳ

ମିଷ୍ଟର ପି. ଶିବଶଙ୍କର—ଶକ୍ତି ଓ ପେଟ୍ରୋଲିୟମ

ମିଷ୍ଟର ବୀରେନ୍ଦ୍ର ପାଟିଲ—ଶ୍ରମ ଓ ପୁନର୍ବସତି

ମିଷ୍ଟର କେ ପି ସାଲଭେ—ସମ୍ବାଦ ଓ ପ୍ରସାରଣ

ମିଷ୍ଟର ହରିନାଥ ମିଶ୍ର—ଗ୍ରାମ ମଙ୍ଗଳ

**ରାଜ୍ୟମନ୍ତ୍ରୀ**

ମିଷ୍ଟର ଏନ୍-ଆର-ଲସ୍କର—ଗୃହ

ମିଷ୍ଟର କେ ଏଲ. ଭଗତ—ବାସ ଓ ପାର୍ଲିଆମେଣ୍ଟ ବ୍ୟାପାର

ମିଷ୍ଟର ଯୋଗେନ୍ଦ୍ର ମକୱାନା—କୃଷି

ମିଷ୍ଟର ସିଓରାଜ ପାଟିଲ—ବିଜ୍ଞାନ ଓ କାରିଗରି, ଇଲେକ୍ଟ୍ରନିକ ପରିବେଶ ଓ ସମୁଦ୍ର ବିକାଶ

ମିଷ୍ଟର ଜି.କେ ଜାଫର ସେରିଫ—ରେଳ ବିଭାଗ

ମିଷ୍ଟର ଜେଡ୍. ଏ ଆନ୍ସରୀ - ଜାହାଜ ଚଳାଚଳ ଓ ପରିବହନ

ଶ୍ରୀମତୀ ରାମ ଦୁଲରୀ ସିନ୍ହା—ଶିଳ୍ପ ଇସ୍ପାତ ଓ ଖଣି

ମିଷ୍ଟର ରାମଚନ୍ଦ୍ର ରଥ—ରସାୟନ

ମିଷ୍ଟର ଖୁରସୀଦ ଆଲମଖାନ—ପର୍ଯ୍ୟଟନ ଓ ବିମାନ ଚଳାଚଳ

ମିଷ୍ଟର ଏ.ଏ. ରହିମ—ବିଦେଶ ବିଭାଗ

ମିଷ୍ଟର ଗାର୍ଗୀ ଶଙ୍କର ମିଶ୍ର--ପେଟ୍ରୋଲିୟମ

ମିଷ୍ଟର ଭି. ଏନ. ଗାଡ୍‌ଗିଲ—ଯୋଗାଯୋଗ

ମିଷ୍ଟର ଏସ. ଏସ. କ୍ରାଷ୍ଣା—ଶିଳ୍ପ

ପଟ୍ଟାଭି ରାମାରାଓ—ଅର୍ଥ

ମିଷ୍ଟର ସି. ପି ଏନ୍ ସିଂହ—ଶକ୍ତି

ମିଷ୍ଟର ମୋହସିନା କିଦୱାଇ—ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ

ମିଷ୍ଟର ଦଳବୀର ସିଂହ—କୋଇଲା ।

ମିଷ୍ଟର ବୀରଭଦ୍ର ସିଂହ—ଶିଳ୍ପ

ମିଷ୍ଟର ପି ଭେଙ୍କଟ ସୁବେୟା—ଗୃହ

**ଉପମନ୍ତ୍ରୀ**

ମିଷ୍ଟର ମଲ୍ଲିକାର୍ଜୁନ—ସମ୍ବାଦ, ପ୍ରସାରଣ ଓ ପାର୍ଲିଆମେଣ୍ଟ ବ୍ୟାପାର

ମିଷ୍ଟର ପି. କେ. ଥନଗଡ—ଶିକ୍ଷା ଓ ସମାଜ ମଙ୍ଗଳ

ମିଷ୍ଟର ମହମ୍ମଦ ଉସମାନ ଆରିଫ—କୃଷି, ସିଭିଲ ସପ୍ଲାଇଜ

ମିଷ୍ଟର ଭି. ଏନ୍. ପାଟିଲ—ଯୋଗାଯୋଗ

ମିସ୍ କୁମୁଦ ବେନ ଯୋଶୀ—ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ

ମିଷ୍ଟର ପି. ଏ. ସାନମା—କମର୍ସ

ମିଷ୍ଟର କଳ୍ପନାଥ ରାୟ,—ଶିଳ୍ପ, ଇସ୍ପାତ ଓ ଖଣି

ଡକ୍ଟର ଏମ. ଏସ. ସଂଜିବୀ ରାଓ—ଇଲେକ୍‌ଟ୍ରନିକ୍ସ
ମିଷ୍ଟର କେ. ପି. ସିଂହଦେଓ—ପ୍ରତିରକ୍ଷା
ମିଷ୍ଟର ଜନାର୍ଦ୍ଦନ ପୂଜାରୀ—ଅର୍ଥ
ମିଷ୍ଟର ଅରିଫ ମହମ୍ମଦ ଖାନ—କୃଷି
ମିଷ୍ଟର ଧରମବୀର—ଶ୍ରମ ଓ ପୁନର୍ବସତି
ମିଷ୍ଟର ଚନ୍ଦ୍ରଶେଖର ସିଂହ—ଶକ୍ତି
ମିଷ୍ଟର ଗୁଲାମ ନବୀ ଆଜାଦ—ଆଇନ, ନ୍ୟାୟ ଓ କମ୍ପାନୀ ବ୍ୟାପାର
ମିଷ୍ଟର ଅଶୋକ ଘାଲେଟ—ପର୍ଯ୍ୟଟନ
ମିଷ୍ଟର ଦିଗ୍‌ବିଜୟ ସିଂହ—ପରିବେଶ

**ଭାରତର ରାଜ୍ୟ, ଗଭର୍ଣ୍ଣର ଓ ମୁଖ୍ୟମନ୍ତ୍ରୀ**

| ରାଜ୍ୟ | ଗଭର୍ଣ୍ଣର | ମୁଖ୍ୟମନ୍ତ୍ରୀ |
|---|---|---|
| ଆନ୍ଧ୍ରପ୍ରଦେଶ | କେ.ସି.ଅବ୍ରାହମ | ଏ-ଟି-ରମାରାଓ |
| ଆସାମ | ପ୍ରକାଶ ମେହେରୋତ୍ରା | ରାଷ୍ଟ୍ରପତି ଶାସନ |
| ବିହାର | ଏ-ଆର-କିଦୱାଇ | ଜଗନ୍ନାଥ ମିଶ୍ର |
| ଗୁଜରାଟ | ଶ୍ରୀମତୀ ଶାରଦା ମୁଖାର୍ଜୀ | ମାଧବ ସିଂହ |
| ହରିୟାନା | ଗଣପତରେ ଦେବାଜୀ ତାପସେ | ଭଜନଲାଲ |
| ହିମାଚଳ ପ୍ରଦେଶ | ଏ-ଏସ୍-ବାନାର୍ଜୀ | ରାମଲାଲ |
| ଜାମୁ ଓ କାଶ୍ମୀର | ବି କେ. ନେହରୁ | ଫାରୁକ ଅବଦୁଲା |
| ମହାରାଷ୍ଟ୍ର | ଆଇ-ଏଚ-ଲତିଫ | ମିଷ୍ଟର ବସନ୍ତରାଓ ପାଟିଲ |
| କର୍ଣ୍ଣାଟକ | ଗୋବିନ୍ଦ ନାରାୟଣ | ରାମକୃଷ୍ଣ ହେଗଡେ |
| କେରଳ | ରାମଚନ୍ଦ୍ରନ | କେ· କରୁଣାକରନ |
| ମଧ୍ୟପ୍ରଦେଶ | ଭଗବତ ଦୟାଲ ଶର୍ମା | ଅର୍ଜୁନ ସିଂହ |
| ମେଘାଳୟ | ପ୍ରକାଶ ମେହେରୋତ୍ରା | କ୍ୟାପ୍‌ଟେନ ଡବଲିଉ-ଏ-ସାଙ୍ଗମା |
| ମଣିପୁର | ଏସ-ଏମ-ଏଚ ବର୍ଣ୍ଣେ | ରିସାଙ୍ଗ କେସିଙ୍ଗ |
| ନାଗାଲାଣ୍ଡ | ,, | ଜେ.ବି. ଜାସୋକେ |
| ଓଡ଼ିଶା | ବି.ଏନ୍-ପାଣ୍ଡେ | ଜେ. ବି ପଟ୍ଟନାୟକ |
| ପଞ୍ଜାବ | ଡକ୍ଟର ଏମ-ଚେନା ରେଡ୍ଡି | ଦରବାର ସିଂହ |
| ରାଜସ୍ଥାନ | ଓ·ପି. ମେହରା | ଶିବ ଚରଣ ମାଥୁର |
| ତାମିଲନାଡୁ | ସାଦିକ ଅଲୀ | ଏମ-ଜି-ରାମଚନ୍ଦ୍ରନ |
| ଉତ୍ତର ପ୍ରଦେଶ | ସି-ପି-ଏନ-ସିଙ୍ଗ | ଶ୍ରୀପତି ମିଶ୍ର |
| ପଶ୍ଚିମବଙ୍ଗ | ଭୈରବଦତ୍ତ ପାଣ୍ଡେ | ଜ୍ୟୋତିବସୁ |

| ରାଜ୍ୟ | ଗଭର୍ଣ୍ଣର | ମୁଖ୍ୟମନ୍ତ୍ରୀ |
|---|---|---|
| ତ୍ରିପୁର | ଏସ-ଏମ-ଏଚ-ବର୍ଣ୍ଣେ | ନିର୍ପେନ ଚକ୍ରବର୍ତ୍ତୀ |
| ସିକ୍କୀମ | ହୋମି-ଜେ-ଏଚ ତାଲେୟାରଖାନ | ନାର ବାହାଦୁର ଭଣ୍ଡାରି |
| କେରଳ | ଶ୍ରୀମତୀ ଜ୍ୟୋତି ଭେଙ୍କେଟ ଚଲମ | ରାଷ୍ଟ୍ରପତି ଶାସନ |

**କେନ୍ଦ୍ର ଶାସିତ ଅଞ୍ଚଳ, ମୁଖ୍ୟ ଓ ମୁଖ୍ୟମନ୍ତ୍ରୀ**

| ଟେରିଟରୀ | ମୁଖ୍ୟ | ମୁଖ୍ୟମନ୍ତ୍ରୀ |
|---|---|---|
| ଆଣ୍ଡାମାନ ଓ ନିକୋବର | ଏସ-ଏଲ-ଶର୍ମା | |
| ଚଣ୍ଡୀଗଡ଼ | ଜେ-ସି-ଅଗରୱାଲ (ଚିଫ କମିସନର) | |
| ଦାଦ୍ରା ଓ ନଗର ହାବେଳି | ପ୍ରତାପ ସିଂହ ରାଣେ (ମୁଖ୍ୟମନ୍ତ୍ରୀ) | |
| ଦିଲ୍ଲୀ | ଜଗ ମୋହନ (ଲେଫ୍‌ଟନାଣ୍ଟ ଗଭର୍ଣ୍ଣର)-କେଦାର ନାଥ ସାହାଣୀ (ଚିଫ୍ ଏକଜିକ୍ୟୁଟିଭ କାଉନ୍‌ସିଲର) | |
| ଗୋଆ ଡ଼ାମନ ଓ ଡ଼ିଉ | ଜଗମୋହନ (ଲେଫ୍‌ଟ ନାଣ୍ଟ ଗଭର୍ଣ୍ଣର) | |
| ଲକ୍ଷାଦ୍ୱୀପ | ବି-ସାଇଡା (ଆଡ଼ମିନିଷ୍ଟ୍ରେଟର) | |
| ପଣ୍ଡିଚେରୀ | କେ-ଏମ୍ ଚଣ୍ଡୀ (ଲେଫଟ ନାଣ୍ଟ ଗଭର୍ଣ୍ଣର) | |
| ମିଜୋରମ | ଆଡ଼ମିରଲ ଏସ-ଏନ-କୋହଲୀ | ବ୍ରିଗେଡ଼ୟର ଥେମପୁଙ୍ଗା |
| ଅରୁଣାଞ୍ଚଳ | ହରି ଶଙ୍କର ଦୁବେ (ଲେଫ୍‌ଟନାଣ୍ଟ ଗଭର୍ଣ୍ଣର) | ଜେନଗଙ୍ଗ ଆପାଙ୍ଗ |

**କେତେକ ସମ୍ମାନସୂଚକ ପଦବୀ ଓ ପୁରସ୍କାର**

**ଭାରତରତ୍ନ**—ସର୍ବଶ୍ରେଷ୍ଠ ଭାରତୀୟ ସମ୍ମାନ ଜନିତ ଆୱାର୍ଡ, କଳା, ଶିକ୍ଷା, ବିଜ୍ଞାନ ଓ ଜନସେବା ନିମନ୍ତେ ଏ ଆୱାର୍ଡ ଦିଆଯାଏ ।

୧୯୫୭ ମସିହାରୁ ଏ ପର୍ଯ୍ୟନ୍ତ ଭାରତରତ୍ନ ଉପାଧି ଲାଭ କରିଥିବା ବ୍ୟକ୍ତି—

୧୯୫୪—ସି. ରାଜଗୋପାଳାଚାରୀ, ଡକ୍ଟର ଏସ-ରାଧାକ୍ରିଷ୍ଣନ, ସି-ଭି-ରମଣ

୧୯୫୫—ଜବାହରଲାଲ ନେହରୁ, ଡକ୍ଟର ଭଗବାନ ଦାସ, ଏମ-ଭିଶ୍ୱେଶ୍ୱରିୟା (ଇଞ୍ଜିନିୟର)

୧୯୫୭—ଗୋବିନ୍ଦ ବଲ୍ଲଭ ପନ୍ଥ

୧୯୫୮ — ଡ଼-କେ-କାର୍ଭେ (ମହାନ ଶିକ୍ଷାବିଦ୍)

୧୯୬୧ — ବିଧାନ ଚନ୍ଦ୍ର ରାୟ, ବାବୁ ପୁରୁଷୋତ୍ତମ ଦାସ ଟଣ୍ଡନ

୧୯୬୨ — ଡକ୍ଟର ରାଜେନ୍ଦ୍ର ପ୍ରସାଦ

୧୯୬୩—ଡକ୍ଟର ଜାକିର ହୁସେନ, ପି-ଭି-କାନେ (ବିଖ୍ୟାତ ପଣ୍ଡିତ)

୧୯୬୬—ଲାଲବାହାଦୁର ଶାସ୍ତ୍ରୀ

୧୯୭୨ — ଇନ୍ଦିରା ଗାନ୍ଧୀ

୧୯୭୫ — ଭି-ଭି-ଗିରି

୧୯୭୬—କେ-କାମରାଜ

୧୯୮୦—ମଦର ଥେରେସା ।

**ଅର୍ଜୁନ ପୁରସ୍କାର**

୧୯୬୧ ମସିହାରୁ ଅର୍ଜୁନ ପୁରସ୍କାର ଦେବା ଆରମ୍ଭ ହେଲା । ଏହା ଦେଶର ବିଖ୍ୟାତ ଖେଳାଳିମାନଙ୍କୁ ଦିଆଯାଏ ।

**ଏକାଡେମୀ ପୁରସ୍କାର**

ତିନିଟି ଭାରତୀୟ ଏକାଡେମୀ, ଯଥା—ଲଳିତକଳା ଏକାଡେମୀ, ସଙ୍ଗୀତ ନାଟକ ଏକାଡେମୀ ଓ ସାହିତ୍ୟ ଏକାଡେମୀ ପ୍ରତିବର୍ଷ ଏ ପୁରସ୍କାର ଦିଅନ୍ତି । ପ୍ରଥମ ଏକାଡେମୀର ପୁରସ୍କାର, କଳା, ସଙ୍ଗୀତ ଓ ନାଟକ କ୍ଷେତ୍ରରେ ବିଶେଷ ପ୍ରତିଭାବାନ ବ୍ୟକ୍ତିଙ୍କୁ ଓ ସାହିତ୍ୟ ଏକାଡେମୀ ପୁରସ୍କାର ବିଶିଷ୍ଟ ଲେଖକମାନଙ୍କୁ ଦିଆଯାଏ ।

**ଭାରତୀୟ ଜ୍ଞାନପୀଠ ପୁରସ୍କାର**

ଭାରତୀୟ ଭାଷାର ଶ୍ରେଷ୍ଠ ଲେଖକଙ୍କୁ ପ୍ରତିବର୍ଷ ଏ ପୁରସ୍କାରର ମୂଲ୍ୟ ଏକଲକ୍ଷ ଟଙ୍କା । ଏ ପର୍ଯ୍ୟନ୍ତ ଜ୍ଞାନପୀଠ ପୁରସ୍କାର ପାଇଥିବା ସାହିତ୍ୟିକ—

୧୯୬୯ — ପ୍ରଫେସର ରଘୁପତି ସହାୟ "ଫିରାକ" ଗୋରଖପୁରୀ ତାଂକର 'ଗୁଲ-ଏ-ନାଘମା' ବହି ନିମନ୍ତେ ।

୧୯୭୦ — ଡକ୍ଟର ସତ୍ୟନାରାୟଣ, ତେଲଗୁ ସାହିତ୍ୟିକ । ତାଙ୍କର ଶ୍ରୀ ମଣ୍ଡାମାୟାନମ୍ କଲ୍ପ ବିକ୍ଷମୁ' ବହି ପାଇଁ ।

୧୯୭୧ — ବିଷ୍ଣୁ ଦେ ତାଙ୍କର 'ସ୍ମୃତିସତ ଭବିଷ୍ୟତ' ବହି ନିମନ୍ତେ ।

୧୯୭୨—ରମଧାରୀ ସିଂହ ଦିନଙ୍କର ତାଙ୍କର 'ଉର୍ବଶୀ' ବହି ନିମନ୍ତେ

୧୯୭୩ — ଡକ୍ଟର ଦତ୍ତାତ୍ରୟ ରମଚନ୍ଦ୍ର ବେନ୍ଦ୍ରେ (କାନାଡାକବି) ତାଙ୍କର 'ନାକୁ-ଥାନ୍ତି' ବହିପାଇଁ ଓ ଗୋପୀନାଥ ମହାନ୍ତି (ଓଡ଼ିଆ ଔପନ୍ୟାସିକ) ତାଂକର 'ମାଟି-ମଟାଳ' ଉପନ୍ୟାସ ନିମନ୍ତେ ।

୧୯୭୪ — ବିଷ୍ଣୁ ସଖାରାମ ଖାଣ୍ଡେକର 'ଯଜାତ୍ରଏ' ଉପନ୍ୟାସ ନିମନ୍ତେ ।

୧୯୭୫—ପି-ଭି-ଅଖିଲନନ୍ଦମ (ତାମିଲ) 'ଛିତ୍ରପାଭି' ବହିପାଇଁ ।

୧୯୭୬—ଆଶାପୂର୍ଣ୍ଣା ଦେବୀ (ପଶ୍ଚିମବଙ୍ଗ) 'ପ୍ରଥମ ପ୍ରତିଶ୍ରୁତି' ବହି ନିମନ୍ତେ ।

୧୯୭୭—ଡକ୍ଟର ଶିବରମ କାରନ୍ତ (କାନାଡ଼ା) 'ମୁକ୍କାଜିୟା କାନାସୁଗାଲୁ' ବହି ପାଇଁ ।

୧୯୭୮—ଏଚ. ଏସ. ବାତ୍ସାୟନ 'ଅଜ୍ଞେୟ' ତାଙ୍କର ଜୈତନି ନାଭନ ମେଁ କିତନିବାର (ହିନ୍ଦୀ) ପାଇଁ

୧୯୭୯—ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ 'ମୃତ୍ୟୁଞ୍ଜୟ' (ଆସାମୀ)

୧୯୮୦—ଏସ-କେ-ପୋଟେଟ ଖାଟ 'ଓରୁ ଦେଶାଲଟିନ କଥା—(ମାଲୟାଲମ) ଉପନ୍ୟାସ ପାଇଁ

୧୯୮୧—ଅମୃତା ପ୍ରୀତମ (ପଞ୍ଜାବୀ)

**ଫାଲକେ ଆୱାର୍ଡ**

ବିଖ୍ୟାତ ଚଳଚ୍ଚିତ୍ର ଅଭିନେତା, ଅଭିନେତ୍ରୀ ଓ ନିର୍ଦ୍ଦେଶକମାନଙ୍କୁ ଏ ପୁରସ୍କାର ଦିଆଯାଏ ।

୧୯୭୦—ଦେବୀକାରାଣୀ

୧୯୭୧—ବି-ଏନ ସରକାର

୧୯୭୨—ପଙ୍କଜ ମଲ୍ଲିକ, ପୃଥିବୀରାଜ କାପୁର ।

୧୯୭୩—ଏମ-ଟି-ବାସୁଦେବ ନାୟାର

୧୯୭୪—ସୁଲୋଚନା

୧୯୭୬—ଧୀରେନ ଗାଙ୍ଗୁଲି

୧୯୭୭—କାନନ ଦେବୀ, ନିତିନ ବୋଷ ।

୧୯୭୮—ଆର-ସି-ବୋରଲ

୧୯୮୦—ସୋରବ ମୋଦି ।

**ନେହେରୁ ଲିଟରେସି ଆୱାର୍ଡ**

୧୯୭୮ ମସିହାରୁ ପ୍ରୌଢ଼ଶିକ୍ଷା ନିମନ୍ତେ ଏ ପୁରସ୍କାର ପ୍ରଚଳିତ ।

୧୯୮୧—ଚୁନିଭାଇ ଆର ଭଟ୍ଟ (ଗୁଜରାଟ)

**ଆନ୍ତର୍ଜାତୀୟ ବୁଝାମଣା ପାଇଁ ନେହରୁ ପୁରସ୍କାର**

ଆନ୍ତର୍ଜାତୀୟ ବୁଝାମଣାରେ ଉନ୍ନତି, ସ୍ୱେଚ୍ଛା ବିନିମୟ ଓ ବନ୍ଧୁତ୍ୱ ସ୍ଥାପନ କରିଥିବା ବ୍ୟକ୍ତିଙ୍କୁ ଏ ପୁରସ୍କାର ଦିଆଯାଏ । ଏ ପୁରସ୍କାରର ମୂଲ୍ୟ ଏକ ଲକ୍ଷ ଟଙ୍କା ।

୧୯୭୯—ନେଲସନ ମାଣ୍ଡେଲ (ଦକ୍ଷିଣ ଆଫ୍ରିକା)

୧୯୮୦—ବାର୍ବର ୱାର୍ଡ—(ୟୁ, କେ)

୧୯୮୧—ମିଷ୍ଟର ଗୁନ୍ନାର ମିରଡାଲ ଓ ତାଙ୍କର ପତ୍ନୀ ଶ୍ରୀମତୀ ଆଲ୍ଭା ମିରଡ଼ାଲ (ସୁଇଡେନ)

**ନୋବେଲ ପ୍ରାଇଜ**

ଡିନାମାଇଟର ଆବିଷ୍କାରକ ସୁଇଡେନର ବୈଜ୍ଞାନିକ ଡକ୍ଟର ଆଲଫ୍ରେଡ

ନୋବେଲଙ୍କ ଦାନରେ ଏ ପୁରସ୍କାର ୧୯୦୧ ମସିହାରୁ ଦେବା ଆରମ୍ଭ ହୋଇଛି । ଅର୍ଥନୀତି, ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଶାନ୍ତି, ସାହିତ୍ୟ, ଔଷଧ ବିଜ୍ଞାନ ଓ ଫିଜିଓଲଜି ପାଇଁ ପ୍ରତିବର୍ଷ ଗୋଟିଏ କରି ଅର୍ଥାତ ମୋଟ ୬ଟି ପୁରସ୍କାର ଦିଆଯାଏ ।

ଏ ପର୍ଯ୍ୟନ୍ତ ନୋବେଲ ପୁରସ୍କାର ପାଇଥିବା ଭାରତୀୟ —

୧୯୩୦—ଡକ୍ଟର ସି-ଭି-ରମଣ (ଫିଜିକ୍ସ)

୧୯୩୧—ଡକ୍ଟର ରବୀନ୍ଦ୍ର ନାଥ ଠାକୁର (ସାହିତ୍ୟ)

୧୯୬୮—ଡକ୍ଟର ହରଗୋବିନ୍ଦ ଖୋରନା (ଔଷଧ ବିଜ୍ଞାନ ଓ ଫିଜିଓଲଜି)

୧୯୭୯—ମଦର ଥେରେସା (ଶାନ୍ତି)

**ଆର-ଡି-ବିରଳା ଆଓ୍ୱାର୍ଡ**

ଭାରତର ଫିଜିକ୍ସ ଆସୋସିଏସନ ଦ୍ୱାରା ଏ ପୁରସ୍କାର ୧୯୮୦ ମସିହାରୁ ପ୍ରଚଳିତ ।

୧୯୮୧—ଉଇଲିୟମ ଟ୍ରାଗେର—ଆମେରିକା (ଟ୍ରପିକାଲ ଡ଼ିଜିଜ)

**ମାଗସେସେ ପୁରସ୍କାର—୧୯୮୧**

ଡକ୍ଟର ପ୍ରମୋଦ କରନ ସେଠୀ—(କମ୍ୟୁନିଟି ସର୍ଭିସ) (ଭାରତୀୟ) ଶ୍ରୀମତୀ ଏ, ଏଚ, ନାସାଉଟିନ—ଇଣ୍ଡୋନେସିୟା (ସମାଜ ମଙ୍ଗଳ ଓ ଜନସେବା)

ମିଷ୍ଟର ଅଗଷ୍ଟିନ ଜୁଙ୍ଗଗୟୁଲ କାଙ୍ଗ—ଦକ୍ଷିଣ କୋରିୟା (ଆନ୍ତର୍ଜାତୀୟ ବୁଝାମଣା)

ଡକ୍ଟର ପ୍ରାୱାସେ ୱାସି—ଥାଇଲାଣ୍ଡ (ସରକାରୀ ସେବା)

ଗୌର କିଶୋର ଘୋଷ—ଭାରତ (ଯୋଗାଯୋଗ, କଳା, ସାମ୍ବାଦିକତା ଓ ସାହିତ୍ୟ)

**ପୁଲିଜର ଆଓ୍ୱାର୍ଡ—୧୯୮୧**

ଉପନ୍ୟାସ—ଜନ କେନେଡ଼

ନାଟକ—ବେଥ ହେଲନେ

ଇତିହାସ—ଲଏନସିଆ ଏ କ୍ଲେମିନ

କବିତା—ଜେମ୍ସ ସୁଇଲର

ଫିଚର—ଜାନେଟ କୁକ୍

**ମାର୍କୋନି ଆଓ୍ୱାର୍ଡ**

ଶିକ୍ଷା ଉଦ୍ଦେଶ୍ୟରେ ସାଟିଲାଇଟ ଟେଲିଭିଜନର ବ୍ୟବହାର କ୍ଷେତ୍ରରେ ଭାରତୀୟ ସ୍ପେସ ଆପ୍ଲିକେସନ ସେଣ୍ଟରର ଡାଇରେକ୍ଟର ପ୍ରଫେସର ଯଶପାଲଙ୍କୁ ୧୯୮୦ ମସିହାର ମାର୍କୋନି ଆୱାର୍ଡ ଦିଆଯାଇଛି ।

**ରଡେର ଡେ ଟିଲ କ୍ୱାଲଇଟ ଆଓ୍ୱାର୍ଡ (ପଶ୍ଚିମ ଜର୍ମାନୀ)**

୧୯୮୦ ମସିହାରେ ପ୍ରଥମ ଭାରତୀୟ ଭାବେ କାର୍ଟୁନ ନିର୍ମାତା ଶ୍ରୀ ଶଙ୍କର ଏ ଆୱାର୍ଡ ଲାଭ କରିଛନ୍ତି ।

**ଗାନ୍ଧୀ ଫିଲ୍ମ ଓ ଓସ୍କାର ପୁରସ୍କାର**

ସାର ରିଚାର୍ଡ ଆଟେନବର୍ଗଙ୍କ ଦ୍ୱାରା ନିର୍ମିତ ଗାନ୍ଧୀଫିଲ୍ମ ଆଠଟି ଓସ୍କାର ପୁରସ୍କାର ଲାଭ କରିଛି । ସର୍ବଶ୍ରେଷ୍ଠ ନିର୍ଦ୍ଦେଶନା ନିମନ୍ତେ ଆଟେନବର୍ଗଙ୍କୁ ଓସ୍କାର ପୁରସ୍କାର ଦିଆଯାଇଛି । ୩୯ ବର୍ଷ ବୟସ୍କ ବେନ କିଙ୍ଗ୍‌ସଲେ ଗାନ୍ଧୀ ଭୂମିକାରେ ଅଭିନୟ କରି ଓସ୍କାର ପୁରସ୍କାର ଲାଭ କରିଛନ୍ତି । ସେ ଜଣେ ଆଙ୍ଗ୍ଲୋ-ଇଣ୍ଡିଆନ ।

ଫିଲ୍ମ ଜଗତର ପୁରସ୍କାର ମଧ୍ୟରେ ଓସ୍କାର ଶ୍ରେଷ୍ଠ ପୁରସ୍କାର । ଏହା ଆମେରିକାର ମୋସନ ପିକ୍‌ଚର ଆର୍ଟସ ଓ ସାଇନ୍‌ସ ଏକାଡେମୀ ଦ୍ୱାରା ପ୍ରତିବର୍ଷ ଦିଆଯାଏ ।

**ଜାହାଙ୍ଗୀର ଓ ମାଛ**

ସମ୍ରାଟ ଜାହାଙ୍ଗୀର ଜୀବନରେ ଯେତେ ମାଛ ଧରୁଥିଲେ ସେଗୁଡ଼ିକ ମଧ୍ୟରୁ ଗୋଟିଏ ହେଲେ ହତ୍ୟା କରୁ ନ ଥିଲେ । ସେ ପ୍ରତ୍ୟେକ ମାଛର ଗାଲିରେ ପ୍ରବାଳ ମାଳ ବାନ୍ଧି ସେଗୁଡ଼ିକୁ ଛାଡ଼ିଦେଉଥିଲେ ।

**ଶିଶୁ ଶ୍ରମିକ**

କଲିକତାରେ ଥିବା ପ୍ରତି ୪୦୦ ଶିଶୁ ଶ୍ରମିକଙ୍କ ମଧ୍ୟରେ ଜଣେ କ୍ରୀତଦାସ । ଏମାନଙ୍କ ମଧ୍ୟରୁ ୨୫ ପ୍ରତିଶତ ଶିଶୁ ଶ୍ରମିକ । ହୋଟେଲ, ରେସ୍‌ଟୁରାଣ୍ଟ ଓ ଦୋକାନମାନଙ୍କରେ କାମ କରନ୍ତି । ପ୍ରତିଦିନ ଏମାନଙ୍କୁ ୧୮ରୁ ୨୦ ଘଣ୍ଟା ପର୍ଯ୍ୟନ୍ତ କାମ କରିବାକୁ ପଡ଼େ । ଏମାନଙ୍କର ଦରମା ଖାଦ୍ୟ ବିନା କିମ୍ବା ଖାଦ୍ୟ ସହିତ ମାସକୁ ୫ରୁ ୫୦ ଟଙ୍କା ।

**ମାନ୍ଦ୍ରାଜ ନିକଟରେ କୁମ୍ଭୀର ବ୍ୟାଙ୍କ**

ମାନ୍ଦ୍ରାଜ ନିକଟସ୍ଥ ମହାବଳୀପୁରମ୍ ଠାରେ ଭାରତର ପ୍ରଥମ କୁମ୍ଭୀର ବ୍ୟାଙ୍କ ଅବସ୍ଥିତ । ଏଠାରେ ପ୍ରାକୃତିକ ପ୍ରଜନନ କେନ୍ଦ୍ର ମଧ୍ୟରେ ଜଣେ ଦର୍ଶକ ଏକ ସମୟରେ ୧୦୦ ରୁ ଅଧିକ କୁମ୍ଭୀର ଦେଖିପାରିବେ ।

**ପୋଷ୍ଟ କାର୍ଡର ମନ୍ଥର ଯାତ୍ରା**

ଜଣେ ବ୍ୟକ୍ତି ନିଜ ଶ୍ୱଶୁରଙ୍କର ମୃତ୍ୟୁ ସମ୍ବାଦ ପୋଷ୍ଟକାର୍ଡରେ ଲେଖି ପୋଷ୍ଟିଙ୍ଗ କଲେ । ସେ ବିହାରର ବୋକାରୋସ୍ଥିତ ହିନ୍ଦୁସ୍ଥାନ ଷ୍ଟିଲ ୱାର୍କସ କନଷ୍ଟ୍ରକସନର କର୍ମଚାରୀ । ଏହି ପୋଷ୍ଟକାର୍ଡ ୧୯୮୦ ମସିହା ଏପ୍ରିଲ ୨୦ ତାରିଖରେ ବିହାରସ୍ଥିତ ଭୋଜପୁର ଜିଲ୍ଲାର ଏକ ପୋଷ୍ଟ ଅଫିସରେ ପୋଷ୍ଟିଙ୍ଗ କରାଯାଇଥିଲା । ଯେଉଁ ସ୍ଥାନରୁ ଯେଉଁ ସ୍ଥାନକୁ ପୋଷ୍ଟକାର୍ଡ ପ୍ରେରଣ କରାଯାଇଥିଲା ତାର ଦୂରତ୍ୱ ଅତିକ୍ରମ କରିବା ନିମନ୍ତେ ପୋଷ୍ଟ କାର୍ଡକୁ ୧୦୯୧ ଦିନ ଲାଗିଥିଲା ।

**ଷ୍ଟୋଭ ଓ କୁକୁଡ଼ା**

କୁପୁସ୍ୱାମୀ ନାମକ ୫୮ ବର୍ଷ ବୟସ୍କ [redacted]

କୁକୁଡ଼ା ଝେରିକରି ଆସୁଥିବା ସମୟରେ ଗୋଟିଏ କୂଅରେ ଗଳିପଡ଼ିଲେ । ସାରା ରାତି ସେ ନିଜର କ୍ଷତବିକ୍ଷତ ଶରୀରର ସେବା କରିବାରେ କଟାଇ ଦେଲେ କାରଣ ଏ ପରିତ୍ୟକ୍ତ କୂଅରୁ ଅନ୍ୟର ସାହାଯ୍ୟ ନନେଇ ବାହାରକୁ ଆସିବା ଅସମ୍ଭବ ନ ଥିଲା । ସକାଳ ହେବା ମାତ୍ରେ କୁକୁଡ଼ା ରଡ଼ିବାରୁ ଲୋକେ ଆକୃଷ୍ଟ ହୋଇ କୂଅପାଖକୁ ଗଲେ ଓ କୁଟୁସ୍ୱାମୀଙ୍କୁ ଉଦ୍ଧାର କଲେ ।

**ବିଶ୍ୱର ବୃହତ୍ତମ ପକ୍ଷୀ**

ଉଟପକ୍ଷୀ ଆଫ୍ରିକାର କେତେକ ଅଂଶରେ ଦେଖାଯାଆନ୍ତି । ଏମାନଙ୍କର ଅଣ୍ଡାର ଖୋଳ ରଚନା ପ୍ଲେଟଭଳି ମୋଟ ଓ ଏହାର ଓଜନ ଦେଢ଼ କିଲୋଗ୍ରାମ । ଏ ଅଣ୍ଡାକୁ ଭାଙ୍ଗିବାକୁ ହେଲେ କରତ ଓ ହାତୁଡ଼ିର ସାହାଯ୍ୟ ଏକାନ୍ତ ଆବଶ୍ୟକ । ଉଟପକ୍ଷୀ ଉଡ଼ିପାରେ ନାହିଁ । ଏ ଅଣ୍ଡା ସିଝିବାକୁ ଦୁଇଘଣ୍ଟା ଲାଗେ । ଅଣ୍ଡାରୁ ବାହାରିବା ସମୟରେ ଉଟପକ୍ଷୀ ଛୁଆର ଆକାର ଗୋଟିଏ ପୂର୍ଣ୍ଣବୟସ୍କ କୁକୁଡ଼ା ପରି । ପୂର୍ଣ୍ଣବୟସ୍କ ପୁରୁଷ ଉଟପକ୍ଷୀର ଉଚ୍ଚତା ୩ ମିଟର ଓ ଓଜନ ୧୫୦ କିଲୋଗ୍ରାମ । ଏହା ପୃଥିବୀର ବୃହତ୍ତମ ପକ୍ଷୀ ।

**ଦିଲ୍ଲୀ ଦୂରଦର୍ଶନ ଟାୱାର**

ପଶ୍ଚିମ ଦିଲ୍ଲୀର ଦୂରଦର୍ଶନ ନିମନ୍ତେ ୨୩୫ ମିଟର ଉଚ୍ଚତା ବିଶିଷ୍ଟ ଗୋଟିଏ ଟାୱାର ନିର୍ମିତ ହେଉଛି । ଏଥିରେ ୩ ୧୫ କୋଟି ଟଙ୍କା ଖର୍ଚ୍ଚ ହେବ । ଏହା କୁତବ ମୀନାରର ଦୁଇଗୁଣ ଉଚ୍ଚ । ଏ ଟାୱାରର ୧୪୭ ମିଟର ଉଚ୍ଚତାରେ ଏକ ଘୂର୍ଣ୍ଣାୟମାନ ରେଷ୍ଟୁରାଣ୍ଟ ନିର୍ମିତ ହେବ । ଏ ରେଷ୍ଟୁରାଣ୍ଟରେ ୧୦୦ ଜଣ ବସି ଖାଇପାରିବେ । ୧୫୦ ମିଟର ଉଚ୍ଚରେ ଅନ୍ୟ ଏକ ଗ୍ୟାଲେରୀ ନିର୍ମିତ ହେବ ଯେଉଁଥିରେ ୧୫୦ ଲୋକ ବସି ଚାରିପାଖର ଦୃଶ୍ୟ ଦେଖିପାରିବେ ।

**ଇତିହାସରେ ବୃହତ୍ତମ ଜନଗଣନା**

୧୯୮୨ ମସିହା ଜୁଲାଇ ୧ ତାରିଖରେ ଚୀନରେ ହୋଇଥିବା ଜନଗଣନା ବିଶ୍ୱର ବୃହତ୍ତମ ଜନଗଣନା । ଏ ଜନଗଣନାର ଲୋକସଂଖ୍ୟା ଥିଲା ୧୦୦୦ ନିୟୁତ । କମ୍ୟୁନିଷ୍ଟ ଶାସିତ ଚୀନର ଲୋକସଂଖ୍ୟା ୧,୦୦୮, ୧୭୫, ୨୮୮ ।

**ସାଉଦୀ ଆରବ ଓ ଓଡ଼ିଶାର ରେଳପଥ**

ଓଡ଼ିଶାର ରାୟଗଡ଼ା ଓ କୋରାପୁଟ ମଧ୍ୟରେ ରେଳପଥ ନିର୍ମାଣ ପାଇଁ ସାଉଦୀ ଆରବ କେନ୍ଦ୍ର ସରକାରଙ୍କୁ ଅର୍ଥ ସାହାଯ୍ୟ କରିବ । ଏହାଦ୍ୱାରା ସେ ଅଞ୍ଚଳରେ ଥିବା ଖଣିଜ ଓ ଜଙ୍ଗଲଜାତ ଦ୍ରବ୍ୟର ଉତ୍ପାଦନ ଓ ରପ୍ତାନୀ ବୃଦ୍ଧି ପାଇବ ।

**ଅଜଗର**

ଦକ୍ଷିଣ ପୂର୍ବ ଏସିଆରେ ବାସ କରୁଥିବା ଅଜଗରର ଦୈର୍ଘ୍ୟ ୨୫ ଫୁଟ ଓ ଓଜନ ୨୨୦ ପାଉଣ୍ଡ ପର୍ଯ୍ୟନ୍ତ ହୋଇଥାଏ । ଏହାକୁ ବେଷ୍ଟନ କରାଇବାପାଇଁ ବାରଜଣ ଲୋକ ଆବଶ୍ୟକ । ଏହା ଗୋଟିଏ ଜାବନ୍ତ ଚିତା ବାଘକୁ ଗିଳି ଯାଇଥିଲା । ଚିତାର ନଖ ଓ ଦାନ୍ତ ଏହାର କୌଣସି କ୍ଷତି କରିପାରିଲା ନାହିଁ ।

### ମହିଳାଙ୍କ ଦ୍ଵାରା ଖେଳରେ ରେକର୍ଡ

ଏବେ ମହିଳାମାନେ ପ୍ରାୟ ପ୍ରତ୍ୟେକ ପୁରୁଷ ଖେଳରେ ଅଂଶ ଗ୍ରହଣ କଲେଣି । ଜାପାନର ପର୍ବତାରୋହିଣୀ ଯୁଙ୍କୋଟାବେଇ ହିମାଳୟର ମାଉଣ୍ଟ ଏଭରେଷ୍ଟ ଆରୋହଣ କରିଥିଲେ । ଅନିତା ଓଲ୍ଡ ନରୱେର ମହିଳା ସ୍କି ଖେଳାଳି । ସେ ଗୋଟିଏ ସ୍କି ବୋର୍ଡରୁ ଲମ୍ଫଦ୍ଵାରା ୯୮ ମିଟର ଦୂରତ୍ଵ ଅତିକ୍ରମ କରିଥିଲେ । ଆମେରିକାର କିଟି ଓନେଲ ଗୋଟିଏ ରକେଟ ଚାଳିତ କାରରେ ଏକ ଘଣ୍ଟାରେ ୯୯୪, ୩୯୬ କିଲୋ-ମିଟର ପଥ ଅତିକ୍ରମ କରିଥିଲେ । କାନାଡ଼ାର ୧୯ ବର୍ଷ ବୟସ୍କା ସିଣ୍ଡିଆ ନିକୋଲାସ ଇଂଲିଶ ଚ୍ୟାନେଲକୁ ଦୁଇଥର ଅତିକ୍ରମ କରିବାରେ ପ୍ରଥମ ମହିଳା । ସେ ଏ ଦୁଇଥର ସନ୍ତରଣ ୧୯ ଘଣ୍ଟା ୫୫ ମିନିଟ ମଧ୍ୟରେ କରିଥିଲେ । ରୁଷର ମହିଳା ପାଇଲଟ ସେଟ-ଲନା ସାଭିସାକ୍ୟା ଘଣ୍ଟାକୁ ୨୬୦୦ କିଲୋମିଟର ବିମାନ ଉଡ୍ଡୟନ କରି ବିଶ୍ଵ ରେକର୍ଡ ସ୍ଥାପନ କରିଛନ୍ତି । ସେ ମହାକାଶକୁ ବିଶ୍ଵର ଦ୍ଵିତୀୟ ମହିଳା ରୂପେ ଯାଇଥିଲେ ।

### ଗୃହପାଳିତ କୋକିଶିଆଳ

ରୁଷର ବୈଜ୍ଞାନିକମାନେ ଏକପ୍ରକାର ଗୃହପାଳିତ କୋକିଶିଆଳ ପ୍ରଜନନ କରାଇ ପାରିଛନ୍ତି । ଏହାର ନାକ ଚେଷ୍ଟା ଓ ଦେହ ବହୁରଙ୍ଗୀ । ଏହା ମଣିଷର ଏକ ବିଶ୍ଵସ୍ତ ବନ୍ଧୁ ରୂପେ ପରିଚିତ । କୃତ୍ରିମ ପ୍ରଜନନ ଦ୍ଵାରା ଏହାର ରୂପ ଓ ରଙ୍ଗ ମଧ୍ୟ ପରିବର୍ତ୍ତିତ କରାଯାଇ ପାରୁଛି । ରୁଷର ପ୍ରାଣୀ ବିଜ୍ଞାନୀମାନେ କୃତ୍ରିମ ପ୍ରଜନନ ଦ୍ଵାରା ବିଭିନ୍ନ ପ୍ରକାର ଜୀବଜନ୍ତୁ ସୃଷ୍ଟି କରିବା ନିମନ୍ତେ ଚେଷ୍ଟା କରୁଛନ୍ତି ।

### ମୁଦ୍ରା ତିଆରି ଖର୍ଚ୍ଚ

ଗୋଟିଏ ପାଞ୍ଚ ପଇସି ତିଆରି କରିବାରେ ୧୩ ପଇସା ଓ ଦଶ ପଇସିଟିଏ ତିଆରି କରିବାରେ ୧୭ ପଇସା ଖର୍ଚ୍ଚ ହୁଏ ।

### ଭାରତର ପ୍ରଧାନ ଧର୍ମ, ଧର୍ମସ୍ଥାନ ଓ ଧର୍ମ ପୁସ୍ତକ

| ଧର୍ମ | ଧର୍ମସ୍ଥାନ | ଧର୍ମପୁସ୍ତକ |
|---|---|---|
| ଖ୍ରୀଷ୍ଟିୟାନ | ଚର୍ଚ୍ଚ | ବାଇବେଲ |
| ହିନ୍ଦୁ | ମନ୍ଦିର | ବେଦ, ଭଗବତ ଗୀତା, ମହାଭାରତ, ରାମାୟଣ |
| ମୁସଲୀମ | ମସଜିଦ | କୋରାନ |
| ପାର୍ସୀ | ଅଗ୍ନି | ଜେନ୍ଦାଆବେସ୍ତା |
| ଶିଖ | ଗୁରୁଦ୍ଵାର | ଗ୍ରନ୍ଥସାହିବ ଗ୍ରନ୍ଥ |
| ୟହୁଦୀ | ସିନାଗଗ | ତୋରା |

## ଭାରତ ସୈନିକ ତାଲିମ କେନ୍ଦ୍ର

ନ୍ୟାସନାଲ ଡିଫେନ୍ସ ଏକାଡେମୀ - ଖଡ଼କୱାସଲା
ଇଣ୍ଡିଆନ ମିଲିଟାରୀ ଏକାଡେମୀ—ଡେରାଡୁନ
ରାଷ୍ଟ୍ରୀୟ ଇଣ୍ଡିଆନ ମିଲିଟାରୀ କଲେଜ ଡେରାଡୁନ
ନ୍ୟାସନାଲ ଡିଫେନ୍ସ କଲେଜ - ନୂଆଦିଲ୍ଲୀ
ଡିଫେନ୍ସ ସର୍ଭିସ ଷ୍ଟାଫ୍ କଲେଜ [illegible]
ଆର୍ମଡ ଫୋର୍ସେସ ମେଡ଼ିକାଲ କଲେଜ [illegible]
ଅଫିସର୍ସ ଟ୍ରେନିଙ୍ଗ ସ୍କୁଲ – ମାଡ୍ରାସ
କଲେଜ ଅଫ କମ୍ବାଟ—ମୋହୋ
ଆର୍ମଡ କର୍ପସ ସେଣ୍ଟର ଆଣ୍ଡ ସ୍କୁଲ – ଅହମଦ ନଗର
ଇନଫାଣ୍ଟ୍ରି ସ୍କୁଲ—ମୋହୋ ଏବଂ ବେଲଗାମ
ସ୍କୁଲ ଅଫ୍ ଆର୍ଟିଲରୀ – ଦେଓଲାଲୀ
କଲେଜ ଅଫ ମିଲିଟାରୀ ଇଞ୍ଜିନିୟରିଙ୍ଗ – [illegible]
ମିଲିଟାରୀ କଲେଜ ଅଫ ଟେଲି କମ୍ୟୁନିକେସନ ମୋହୋ
ଇଞ୍ଜିନିଅରିଙ୍ଗ ଇନଷ୍ଟିଚ୍ୟୁଟ ଅଫ ଡିଫେନ୍ସ [illegible] ମେଣ୍ଟ – ସିକନ୍ଦରାବାଦ
ଆର୍ମି କ୍ୟାଡେଟ କଲେଜ—ଡେରାଡୁନ
ଆର୍ମି ଅର୍ଡିନାନ୍ସ କର୍ପସ ସ୍କୁଲ ଜବଲପୁର

## ଭାରତର ନୌସୈନିକ ତାଲିମ କେନ୍ଦ୍ର

ଆଇ-ଏନ-ଏସ-ସିରକାର—ବିଶାଖା ପଟ୍ଟମ୍
ଆଇ-ଏନ-ଏସ-ହାମଲା – ମାଲାଡ, ବମ୍ବେ
ଆଇ-ଏନ-ଏସ-ଶିବାଜୀ – ଲୋନାଭଲା (ମହାରାଷ୍ଟ୍ର)
ଆଇ-ଏନ-ଏସ-ବାଲସୁର—ଜାମ ନଗର (ଗୁଜରାଟ)
ଆଇ-ଏନ-ଏସ—ଭେଣ୍ଡୁରୁଥି (କୋଚିନ)
ନାଭାଲ ଏକାଡେମୀ—କୋଚିନ
ନାଭାଲ ଏୟାର ଷ୍ଟେସନ ଗରୁଡ଼—କୋଚିନ
ସେଲର୍ସ ଟ୍ରେନିଙ୍ଗ ଏଷ୍ଟାବ୍ଲିସମେଣ୍ଟ - ଡାବୋଲିମ (ଗୋଆ)

## ଭାରତୀୟ ବିମାନ ବାହିନୀ ତାଲିମ କେନ୍ଦ୍ର

ଏୟାର ଫୋର୍ସ ଅଡମିନିଷ୍ଟ୍ରେଟିଭ କଲେଜ—କୋଇମ୍ବାଟୁର
ଏୟାର ଫୋର୍ସ ଏକାଡେମୀ—ହାଇଦ୍ରାବାଦ

ଏୟାର ଫୋର୍ସ ଟେକ୍‌ନିକାଲ କଲେଜ — ଜାଲାହ୍ଲି
ଏୟାର ଫୋର୍ସ ସ୍କୁଲ — ସାମ୍ବର-ବେଲଗାମ
ଫ୍ଲାଇ ଇନ୍‌ସପେକ୍‌ଟରସ ସ୍କୁଲ — ଟାମ୍ବାରମ
ଏଲିମେଣ୍ଟାରୀ ଫ୍ଲାଇଙ୍ଗ ସ୍କୁଲ — ବିଦର
ଫାଇଟର ଟ୍ରେନିଙ୍ଗ ଆଣ୍ଡ ଟ୍ରାନ୍‌ସ ପୋର୍ଟ ଟ୍ରେନିଙ୍ଗ ଉଇଙ୍ଗ୍‌ସ ଅଫ ଦି
ଏୟାର ଫୋର୍ସ — ହକିମପେଟ ଓ ୟେଲାହାଙ୍କା
ଇନଷ୍ଟିଚ୍ୟୁଟ ଅଫ ଆଭିଏସନ ମେଡ଼ିସିନ — ବାଙ୍ଗାଲୋର
ପାରାଟ୍ରୁପର୍‌ସ ଟ୍ରେନିଙ୍ଗ ସ୍କୁଲ — ଆଗ୍ରା
ନାଭିଗେସନ ଆଣ୍ଡ ସିଗନାଲ ସ୍କୁଲ — ହାଇଦରାବାଦ
କଲେଜ ଅଫ ଏୟାର ୱାରଫେୟାର — ସିକନ୍ଦରାବାଦ ୱାର ଫେୟାର

## ଭାରତର ପ୍ରତିରକ୍ଷା ଉତ୍ପାଦନ ଅନୁଷ୍ଠାନ

ଭାରତ ଡାଇନାମିକ୍‌ସ ଲିମିଟେଡ୍ — ହାଇଦ୍ରାବାଦ
ଭାରତ ଆର୍ଥ ମୋୟର୍ସ ଲିମିଟେଡ — ବାଙ୍ଗାଲୋର
ଭାରତ ଇଲେକ୍‌ଟ୍ରୋନିକ୍‌ସ ଲିମିଟେଡ — ବାଙ୍ଗାଲୋର
ଗାର୍ଡନ ରିଚସିପ୍ ବିଲ୍‌ଡର୍ସ ଆଣ୍ଡ ଇଞ୍ଜିନିୟର୍ସ — କଲିକତା
ଗୋଆସିପ୍ ଇୟାର୍ଡ — ଗୋଆ
ହେଭି ଭେଇକିଲ୍‌ସ ଫ୍ୟାକ୍‌ଟରୀ — ଆଭଡି
ହିନ୍ଦୁସ୍ଥାନ ଏରୋନଟିକ୍‌ସ ଲିମିଟେଡ — ବାଙ୍ଗାଲୋର, ନାସିକ, କୋରାପୁଟ, ହାଇଦ୍ରାବାଦ, କାନପୁର ଓ ଲକ୍ଷ୍ନୌ ।
ମାଜଗାଓଁ ଡକ୍ — ବମ୍ବେ
ମିଶ୍ରଧାତୁ ନିଗମ — ହାଇଦ୍ରାବାଦ
ପ୍ରଗାଟୁଲ୍‌ସ — ହାଇଦ୍ରାବାଦ

## ଭାରତୀୟ ସେନାରେ କମିସନ୍ଡ ର୍ୟାଙ୍କ

| ସ୍ଥଳସେନା | | ନୌସେନା | | ବିମାନ ବାହିନୀ |
|---|---|---|---|---|
| ଜେନେରାଲ | -- | ଆଡମିରାଲ | — | ଏୟାର ଚିଫ |
| ଲେଫ୍‌ଟନାଲଜେନେରାଲ | .... | ଭାଇସ ଆଡମିରାଲ | ... | ମାର୍ଶାଲ |
| ମେଜର ଜେନେରାଲ | ---- | ରିଅର ,, | — | ଏୟାର ମାର୍ଶାଲ |
| ବ୍ରିଗେଡ଼ିୟର | | କମାଂଡୋର | — | ଏୟାର |
| କର୍ଣ୍ଣେଲ | — | କ୍ୟାପଟେନ | ---- | ଭାଇସ ମାର୍ଶାଲ |
| ଲେଫ୍‌ଟନାଣ୍ଟକର୍ଣ୍ଣେଲ | — | କମାଣ୍ଡର | — | ଏୟାରକମାଣ୍ଡୋର |

| ସ୍ଥଳସେନା | | ନୌସେନା | | ବିମାନ ବାହିନୀ |
|---|---|---|---|---|
| ମେଜର | — | ଲେଫ୍‌ଟନାଣ୍ଟ କମାଣ୍ଡର | — | ଗ୍ରୁପ-କ୍ୟାପ୍‌ଟେନ |
| କ୍ୟାପ୍‌ଟେନ | — | ଲେଫ୍‌ଟନାଣ୍ଟ | — | ଉଇଙ୍ଗ-କମାଣ୍ଡର |
| ସେକେଣ୍ଡଲେଫ୍‌ଟନ୍ୟାଣ୍ଟ | — | ଆକ୍‌ଟିଙ୍ଗ | — | ସ୍କ୍ୱାଡ୍ରନ-ଲିଡର |
| | | ସବ୍‌ଲେଫ୍‌ଟନାଣ୍ଟ | — | ଫ୍ଲାଇଟ-ଲେଫ୍‌ଟନାଣ୍ଟ |
| | | | | ଫ୍ଲାଇଙ୍ଗ ଅଫିସର |
| | | | | ପାଇଲେଟ ଅଫିସର |

**ଭାରତୀୟ ରେଳ ବିଭାଗ**:

ଭାରତୀୟ ରେଳ ବିଭାଗ ମନ୍ତ୍ରଣାଳୟ ଅଧୀନରେ ଅବସ୍ଥାପିତ । ରେଲୱେ ବୋର୍ଡ ପରିଚାଳନାରେ ମନ୍ତ୍ରୀମଣ୍ଡଳକୁ ସାହାଯ୍ୟ କରନ୍ତି । ରେଲୱେ ବୋର୍ଡରେ ଜଣେ ଚେୟାରମ୍ୟାନ୍; ଜଣେ ଫାଇନାନସିଆଲ କମିସନର ଓ ଭାରତ ସରକାରଙ୍କର ସେକ୍ରେଟେରୀ ପାହ୍ୟାର ତିନିଜଣ ମେମ୍ବର ଅଛନ୍ତି । ଭାରତୀୟ ରେଳ ବିଭାଗ ନଅଟି ଜୋନରେ ବିଭକ୍ତ । ପ୍ରତ୍ୟେକ ଜୋନ ଜଣେ ଜଣେ ଜେନେରଲ ମ୍ୟାନେଜରଙ୍କ ଅଧୀନରେ ଅବସ୍ଥାପିତ । ତିନିଟି ପ୍ରୋଡକସନ ୟୁନିଟ ଅଛି । ଏଥିମଧ୍ୟରୁ ଦୁଇଟିରେ ଇଞ୍ଜିନ ଓ ଗୋଟିକରେ ପ୍ୟାସେଞ୍ଜର କୋଚ ନିର୍ମିତ ହୁଏ ।

| ଜୋନ | | ହେଡ଼କ୍ୱାଟରସ | | ରେଲପଥର ଦୈର୍ଘ୍ୟ (କିଲୋମିଟାର) |
|---|---|---|---|---|
| ୧—ସେଣ୍ଟ୍ରାଲ | — | ବମ୍ବେ ଭି ଟି | — | ୬,୨୮୪ |
| ୨—ଇଷ୍ଟର୍ଣ୍ଣ | — | କଲିକତା | — | ୪,୨୦୨ |
| ୩—ନର୍ଦ୍ଦର୍ଣ୍ଣ | — | ନୂଆଦିଲ୍ଲୀ | — | ୧୦,୮୫୩ |
| ୪—ନର୍ଥଇଷ୍ଟର୍ଣ୍ଣ | — | ଗୋରଖପୁର | — | ୫,୧୧୩ |
| ୫—ନର୍ଥ ଇଷ୍ଟ ଫ୍ରଣ୍ଟିୟର | — | ମାଲିଗାଓଁ ଗୌହାଟି | — | ୩,୬୨୮ |
| ୬—ସଦର୍ନ | — | ମାଡ୍ରାସ | — | ୬,୬୨୯ |
| ୭—ସାଉଥଇଷ୍ଟ୍ରୋଲ | — | ସେକେନ୍ଦ୍ରାବାଦ | — | ୬୪୨୮ |
| ୮—ସାଉଥ ଇଷ୍ଟର୍ଣ୍ଣ | — | କଲିକତା | — | ୭୦୦୨ |
| ୯—ୱେଷ୍ଟର୍ଣ୍ଣ | — | ବମ୍ବେ (ଚର୍ଚ୍ଚଗେଟ) | — | ୧୦,୩୩୯ |

**ରେଳ ବିଭାଗ ଉତ୍ପାଦନ କେନ୍ଦ୍ର**

୧—ଚିତ୍ତରଞ୍ଜନ ଲୋକୋମୋଟିଭ୍ସ ୱାର୍କସ—୧୯୫୦ ମସିହାରେ ଏହା ଷ୍ଟିମ ଲୋକୋମୋଟିଭ୍ସ ନିର୍ମାଣ କରିବା ପାଇଁ ପ୍ରତିଷ୍ଠା କରାଗଲା । ୧୯୭୨ ମସିହା ପରେ

ଏପ୍ରକାର ଇଂଜିନ ନିର୍ମାଣ ବନ୍ଦକରି ଦିଆଯାଇଛି । ଏବେ ସେଠାରେ ଇଲେକ୍ଟ୍ରିକ ଲୋକୋମୋଟିଭ ଓ ଡିଜେଲ ସଣ୍ଟିଙ୍ଗ ଲୋକୋମୋଟିଭ ନିର୍ମିତ ହେଉଛି ।

୨—ଡିଜେଲ ଲୋକୋମୋଟିଭ ୱାର୍କସ ବାରଣସୀ—୧୯୬୪ ମସିହାରେ ଏ କାରଖାନା ପ୍ରତିଷ୍ଠିତ ହେଲା । ଏଠାରେ ବାହାରୁ ପାର୍ଟସ ଆଣି ଡିଜେଲ ଚାଳିତ ରେଳ ଇଂଜିନ ନିର୍ମାଣ କରଗଲା । ଏବେ ବାହାରୁ ପାର୍ଟ୍ସ ଆମଦାନୀ ପ୍ରାୟ ବନ୍ଦହୋଇ ଗଲାଣି ଓ ଏଠାରେ ବ୍ରଡଗେଜ, ମିଟାର ଗେଜ, ଡିଜେଲ ଲୋକୋମୋଟିଭ୍, ଡିଜେଲ ସଣ୍ଟର୍ସ ଓ ଇଲେକ୍ଟ୍ରିକ ସଣ୍ଟର୍ସ ନିର୍ମିତ ହେଉଛି ।

୩—ଇଣ୍ଟିଗ୍ରାଲ କୋଚ ଫ୍ୟାକ୍ଟରୀ—ପାରମ୍ବୁର । ୧୯୫୫ ମସିହାରେ ଏ କାରଖାନା ଉତ୍ପାଦନ କ୍ଷମହେଲା । ଏହା ବ୍ରଡଗେଜ ଓ ମିଟାର ଗେଜପାଇଁ କୋଚ, ଇଲେକଟ୍ରିକ୍ ମଲ୍ଟିପଲ ୟୁନିଟ, ଡିଜେଲ କାର ଓ ଏହାର କଣ୍ଡିସନ କୋଚ ନିର୍ମାଣ କରେ ।

**ଭାରତର ବିମାନ ବନ୍ଦର**

ଭାରତରେ ପାଞ୍ଚଟି ଆନ୍ତର୍ଜାତୀୟ ବିମାନ ବନ୍ଦର ଓ ଅନ୍ୟ ୮୫ ଟି ବିମାନ ବନ୍ଦର ଅଛି । ଆନ୍ତର୍ଜାତୀୟ ବିମାନ ବନ୍ଦରଗୁଡ଼ିକ ହେଲା —୧ ବମ୍ବେ (ସାନ୍ତାକ୍ରୁଜ) ୨—କଲିକତା (ଦମଦମ) ୩—ଦିଲ୍ଲୀ (ପାଲାମ) ୪—ମାଡ୍ରାସ (ମୀନାମବାକ୍କମ) ୫—ଅମୃତସର (ରାଜସାନ୍ସୀ) ।

**ଭାରତର ପ୍ରଧାନ ବନ୍ଦର**

ଭାରତର ପଶ୍ଚିମ ଉପକୂଳରେ ଥିବା ପ୍ରଧାନ ବନ୍ଦରଗୁଡ଼ିକ ହେଲା—ବମ୍ବେ, କାଣ୍ଡଲା, ମର୍ମୁଗାଓ, ନିଉ ମାଙ୍ଗାଲୋର ଓ କୋଚିନ, ପୂର୍ବ ଉପକୂଳର ପ୍ରଧାନ ବନ୍ଦର—ଟ୍ୟୁଟିକୋରିନ, ମାଡ୍ରାସ,ବିଶାଖାପଟ୍ଟମ, ପାରଦୀପ, କଲିକତା ଓ ହଳଦିଆ । ବମ୍ବେ—ଭାରତର ସର୍ବବୃହତ ବନ୍ଦର; ଏହା ପ୍ରାକୃତିକ ବନ୍ଦର । ସମସ୍ତ ବନ୍ଦରର ମୋଟ କାମର ଏକପଞ୍ଚମାଂଶ କାମ ଏ ବନ୍ଦର କରେ ।

କଲିକତା—ନଦୀକୂଳସ୍ଥ ବନ୍ଦର । ଏହା ଦକ୍ଷିଣ ଏସିୟାର ବୃହତ୍ତମ ଟର୍ମିନାଲ ବନ୍ଦର ।

କୋଚିନ – ଏହା ପ୍ରାକୃତିକ ବନ୍ଦର ଓ ପଶ୍ଚିମ ଉପକୂଳରେ ଅବସ୍ଥିତ ।

ହଳଦିଆ – ୧୯୬୭ ମସିହାରୁ ଏଠାରେ ଡକ୍ ପଦ୍ଧତି କାର୍ଯ୍ୟକାରୀ ହୋଇଛି ।

କାଣ୍ଡଲା—ଏଠାରୁ ପେଟ୍ରୋଲିୟମ ସାର, ଖାଦ୍ୟ, ତୁଳା, ସିମେଣ୍ଟ, ତେଲ, ପ୍ରଭୃତି ଆମଦାନୀ ଓ ରପ୍ତାନୀ ହୁଏ ।

ମାଡ୍ରାସ—କୃତ୍ରିମ ବନ୍ଦର । ଏଠାରୁ ପେଟ୍ରୋଲ ଓ ଲୁହା ପଥର ରପ୍ତାନୀ କରଯାଏ ।

ନିଉ ମାଙ୍ଗାଲୋର—୧୯୭୪ ମସିହାରେ ଏହାକୁ ମେଜର ପୋର୍ଟ ରୂପେ ସ୍ୱୀକୃତି ମିଳିଲା ।

ମର୍ମୁଗାଓ (ଗୋଆ)—ଏଠାରୁ ସାର, ପେଟ୍ରୋଲିୟମ, ଗ୍ରାନାଇଟ ପ୍ରସ୍ତର ପ୍ରଭୃତି ରପ୍ତାନୀ କରଯାଏ ।

ପାରଦୀପ—ଏଠାରୁ ଲୁହାପଥର ଓ କୋଇଲା ରପ୍ତାନୀ କରଯାଏ ।

ଟ୍ୟୁଟିକୋରିନ—୧୯୭୪ ମସିହାରେ ମେଜର ପୋର୍ଟ ରୂପେ ସ୍ୱୀକୃତି ଲାଭ କଲା ।

ବିଶାଖାପଟ୍ଟନମ—ଭାରତର ଗଭୀରତମ ବନ୍ଦର ।

## ଜାତୀୟ ସମ୍ବାଦ ୧୯୮୨—ଜୁନ

୯—ଗୌହାଟୀ ବୋମା ବିସ୍ଫୋରଣରେ ୧୮ ଜଣଙ୍କର ମୃତ୍ୟୁ ।

୧୦—ଉଢ଼ିଷା ବନ୍ୟାରେ ୧୫ ଜଣ ବ୍ୟକ୍ତିଙ୍କର ମୃତ୍ୟୁ ।

୧୬—ପ୍ରେସ କାଉନସିଲର ଚେୟାରମ୍ୟାନ ରୂପେ ଜଷ୍ଟିସ ଏ-ଏନ-ଗ୍ରୋଭର ପୁନର୍ନିର୍ବାଚିତ ।

୧୭—ଦସ୍ୟୁ ମାଲକାନ ସିଂହଙ୍କ ସହିତ ୧୯ ଜଣ ଦସ୍ୟୁଙ୍କର ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀଙ୍କ ପାଖରେ ଆତ୍ମସମର୍ପଣ ।

୧୮—କାନପୁର ନିକଟସ୍ଥ ଅଗ୍ନିକାଣ୍ଡରେ ୧୬ ଜଣଙ୍କର ମୃତ୍ୟୁ । ମୁଖ୍ୟ ନିର୍ବାଚନ କମିସନର ରୂପେ ଆର-କେ-ତ୍ରିବେଦୀଙ୍କର କାର୍ଯ୍ୟରେ ଯୋଗଦାନ ।

୧୯—ଚିତ୍ର ତାରକା ଜୟଲକ୍ଷ୍ମୀଙ୍କର ମୃତ୍ୟୁ ।

୨୦—ଆସାମ ମେଲ ଦୁର୍ଘଟଣାରେ ୧୬ ଜଣଙ୍କର ମୃତ୍ୟୁ ।

୨୨—ଏୟାର ଇଣ୍ଡିଆ ବିମାନ ଦୁର୍ଘଟଣାରେ ୧୯ ଜଣଙ୍କର ମୃତ୍ୟୁ ।

୨୭—ଚଳଚ୍ଚିତ୍ର ଅଭିନେତା ହୀରାଲାଲଙ୍କର ମୃତ୍ୟୁ ।

୨୮—ଉତ୍ତର ପ୍ରଦେଶର ମୁଖ୍ୟ ମନ୍ତ୍ରୀ ଭି-ପି-ସିଂହଙ୍କର ଇସ୍ତଫା ।

## ଜୁଲାଇ

୫—ହିନ୍ଦୀ ଫିଲ୍ମର ସ୍ୱର ସଂଯୋଜକ ଭରତ ବ୍ୟାସଙ୍କର ମୃତ୍ୟୁ ।

୧୫—ଜ୍ଞାନୀ ଜୈଲ ସିଂହ ଭାରତର ରାଷ୍ଟ୍ରପତି ରୂପେ ନିର୍ବାଚିତ ।

୧୬—ହଜାରିବାଗ ଜିଲ୍ଲାରେ ୧୦୦ କୋଇଲାଖଣି ଶ୍ରମିକଙ୍କର ମୃତ୍ୟୁ ।

୧୯—ଉତ୍ତର ପ୍ରଦେଶରେ ଶ୍ରୀପତ ମିଶ୍ର ମନ୍ତ୍ରୀମଣ୍ଡଳର ଶପଥ ଗ୍ରହଣ । କୃଷି ତତ୍ତ୍ୱର ଏ-ଏସ-ଚିମାଙ୍କର ମୃତ୍ୟୁ ।

୨୦- ପାକିସ୍ଥାନ ମୁକ୍ତି ଦେଇଥିବା ୮୦ ଜଣ ଭାରତୀୟଙ୍କର ଭାରତ ଆଗମନ । ମହାତ୍ମା ଗାନ୍ଧଙ୍କର ଶିଷ୍ୟା ମୀରାବେନ୍‌ଙ୍କର ମୃତ୍ୟୁ ।

୨୮—ଶ୍ରୀମତୀ ଗାନ୍ଧି ନ୍ୟୁୟର୍କରେ ପହଞ୍ଚିଲେ ।

୨୯—ଆନ୍ତୁଲେଙ୍କ ବିରୁଦ୍ଧରେ ମୋକଦ୍ଦମା ଚଳିବା …ଜ୍ୟପାଳଙ୍କର ଅନୁମତି । କମ୍ୟୁନିଷ୍ଟ ନେତା ସୋହନ ସିଂହଙ୍କର ମୃତ୍ୟୁ ।

୩୧—ଏମ-ବି-ଦେଶାଇଙ୍କର ମାଗ୍‌ସେସେ ପୁରସ୍କାର ଲାଭ । ହିମାଚଳ ପ୍ରଦେଶର ରାସ୍ତା ଦୁର୍ଘଟଣାରେ ୩୩ ଜଣଙ୍କର ମୃତ୍ୟୁ ।

## ଅଗଷ୍ଟ

୪—ସି-ପି-ଭଟଙ୍କର ମାଗସେସେ ପୁରସ୍କାର ଲାଭ । ପୂର୍ବତନ ରାଜ୍ୟପାଳ ଟି-ଏନ-ସିଂହଙ୍କର ମୃତ୍ୟୁ । ଏମ-ପି-ଡି-କାମାକ୍ଷାଙ୍କର ମୃତ୍ୟୁ ।

୫—ଲୋକସଭାର ପୂର୍ବତନ ବାଚସ୍ପତି ଗୋଡେ ମୁରହରିଙ୍କର ମୃତ୍ୟୁ ।

୬—ଜ୍ଞାନପୀଠ ପୁରସ୍କାର ବିଜେତା ଏସ-କେ-ପୋଟେକୋଟଙ୍କର ମୃତ୍ୟୁ ।

୯—ଐତିହାସିକ ଓ ହାଇକମିସନର ବି-ଏସ-ଉପାଧ୍ୟାୟଙ୍କର ପୋର୍ଟ ଲୁଇସରେ ମୃତ୍ୟୁ ।

୧୩—ଏୟାର ଚିଫ୍ ମାର୍ଶାଲ ପି-ସି-ଲାଲଙ୍କର ଲଣ୍ଡନରେ ମୃତ୍ୟୁ ।

୧୬—ଚଳଚ୍ଚିତ୍ର ଅଭିନେତା କହ୍ନେୟା ଲାଲଙ୍କର ମୃତ୍ୟୁ ।

୨୦—ଭାରତୀୟ ବିମାନ ଅପହରଣକାରୀର ଅମୃତସରରେ ଗୁଳିମାଡ଼ରେ ମୃତ୍ୟୁ ।

୨୧—ପାଟନାରେ ସାମ୍ବାଦିକମାନଙ୍କ ଉପରେ ପୋଲିସର ଲାଠି ଚାଳଣା ।

୨୨—ବିବେକାନନ୍ଦ ରକ୍ ମେମୋରିୟାଲର ନିର୍ମାତା ଏକନାଥ ରାନାଡେଙ୍କର ମୃତ୍ୟୁ ।

୨୩—ଐତିହାସିକ ତତ୍ତ୍ୱର ଆର-ପି-ତ୍ରିପାଠୀଙ୍କର ମୃତ୍ୟୁ ।

୨୪—ହରିୟାନାରେ ୨୯୩ ଜଣ ପୋଲିସ ଅଫିସରଙ୍କୁ ଦଣ୍ଡ ।

୨୬—ଐତିହାସିକ ପ୍ରଫେସର ଏସ-ସି-ସରକାରଙ୍କର ମୃତ୍ୟୁ ।

୨୭—ଡେରାଡୁନରେ ମା ଆନନ୍ଦମୟୀଙ୍କର ମୃତ୍ୟୁ ।

୩୦—ସିଲଙ୍ଗ ନିକଟରେ ୨୫ ଜଣଙ୍କର ବାସ ଦୁର୍ଘଟଣାରେ ମୃତ୍ୟୁ ।

୩୧—ପୂର୍ବତନ ଉପରାଷ୍ଟ୍ରପତି ଜି-ଏସ-ପାଠକଙ୍କର ମୃତ୍ୟୁ ।

## ସେପ୍ଟେମ୍ବର

୩—ବିହାର ପ୍ରେସ ବିଲର ପ୍ରତିବାଦ କରି ସାମ୍ବାଦିକମାନଙ୍କର ଧର୍ମଘଟ । ଗୁଜୁରାଟରେ ବିଷାକ୍ତ ମଦ୍ୟପାନ କରି ୫୭ ଜଣଙ୍କର ମୃତ୍ୟୁ । ସାମ୍ବାଦିକ ବାବୁ ଭାଓ ପଟେଲଙ୍କର ମୃତ୍ୟୁ ।

୪—ମୃତା ସିଷ୍ଟର ଜୟୋଲାଙ୍କୁ ରାଷ୍ଟ୍ରପତି ପୁରସ୍କାର ସର୍ବୋତ୍ତମ ଜୀବନରକ୍ଷା ପଦକ ପ୍ରଦାନ ।

୫—ଗୁଜୁରାଟ ବିଷାକ୍ତ ମଦ୍ୟପାନରେ ମୃତ୍ୟୁ ସଂଖ୍ୟା ୬୨କୁ ବୃଦ୍ଧି ।

୬—କୃତ୍ରିମ ଉପଗ୍ରହ ଇନସାଟ—୧-ଏର ମୃତ୍ୟୁ ।

୮—ମୁଖ୍ୟମନ୍ତ୍ରୀ ସେଖ ମହମ୍ମଦ ଅବ୍ଦୁଲ୍ଲାଙ୍କର ମୃତ୍ୟୁ ।

୯—ମେରଟରେ ଦେଖିବାମାତ୍ରେ ଗୁଳି କରିବା ପାଇଁ ଆଦେଶ ।

୧୨—ଅମୃତସର ନିକଟରେ ରେଳ ଦୁର୍ଘଟଣାରେ ୩୪ ଜଣ ବ୍ୟକ୍ତିଙ୍କର ମୃତ୍ୟୁ ।

୧୪—ଜାମୁ ଓ କାଶ୍ମୀରରେ ଫାରୁକ ଅବଦୁଲ୍ଲା ମନ୍ତ୍ରୀମଣ୍ଡଳର ଶପଥ ଗ୍ରହଣ ।

୧୫—ଏସୀୟ ଫିଲ୍ମ ପ୍ରତିଯୋଗିତାରେ ମାଲୟାଲମ ଚଳଚ୍ଚିତ୍ର—'ଅତିତା-ଥୋରୁ ଫେଲଙ୍ଗାନ'ର ପ୍ରଥମ ପୁରସ୍କାର ଲାଭ ।

୨୦—ଆନ୍ଧ୍ରରେ ଭାସ୍କର ରେଡ୍ଡୀ ମନ୍ତ୍ରୀମଣ୍ଡଳର ଶପଥ ଗ୍ରହଣ ।

୨୧—ମରହଟ୍ଟୀ କବି ସଦାନନ୍ଦ ରିଗେଙ୍କର ମୃତ୍ୟୁ ।

୨୬—ବିଖ୍ୟାତ କଳାକାର ନିରେଦ ମଜୁମଦାରଙ୍କର ମୃତ୍ୟୁ ।

୨୭—ବିଖ୍ୟାତ ଗାୟିକା ବି. କପିଳେଶ୍ୱରୀଙ୍କର ମୃତ୍ୟୁ ।

୨୯—ନଙ୍ଗଲ ପୁଷ୍କରିଣୀରେ ୨୨ ଜଣ ଛାତ୍ର ଛାତ୍ରୀଙ୍କର ସଲୀଳ ସମାଧି ।

## ଅକ୍ଟୋବର

୧—ମିରଟରେ ସାତଜଣଙ୍କର ମୃତ୍ୟୁ

୨—ପୂର୍ବତନ ଅର୍ଥ ମନ୍ତ୍ରୀ ସି. ଡ଼ି. ଦେଶମୁଖଙ୍କର ମୃତ୍ୟୁ । ଗଣେଶ ପୁରୀରେ ଗୁରୁଦେବ ସିଦ୍ଧ ପୀଠର ମୁଖ୍ୟ ମୁକ୍ତାନନ୍ଦ ପରମହଂସଙ୍କର ମୃତ୍ୟୁ ।

୫—ସଂସ୍କୃତ ପଣ୍ଡିତ ଆର-ଏସ- ପଞ୍ଚମୁଖୀଙ୍କର ମୃତ୍ୟୁ

୭—ଲାଡାଖରେ ବସ୍ ଦୁର୍ଘଟଣାରେ ୧୭ ଜଣଙ୍କର ମୃତ୍ୟୁ ।

୮—ଭାରତୀୟ ବିମାନ ବାହିନୀର ସୁବର୍ଣ୍ଣ ଜୟନ୍ତୀ ପାଳନ ।

୯—ବିଖ୍ୟାତ ଏମ. ପି. ଏଚ୍. ଭି-କାମାଥଙ୍କର ମୃତ୍ୟୁ ।

୧୧—ଦାନ ସ୍ୱରୂପ ରଙ୍ଗିନ ଟି.ଭି. ଆମଦାନୀ କରିବାପାଇଁ ସରକାରଙ୍କ ଅନୁମତି ପ୍ରଦାନ । ଦିଲ୍ଲୀ ଗୁଳିକାଣ୍ଡରେ ୪ ଜଣ ଅକାଳୀ ନିହତ । ମାନହେଇମ ଫିଲ୍ମ ଉତ୍ସବରେ 'ଅର୍ଦ୍ଧଶୀଳା'ଫିଲ୍ମର ସ୍ୱର୍ଣ୍ଣପଦକ ଲାଭ ।

୧୨—ପ୍ରସିଦ୍ଧ ପୋଲୋ ଖେଳାଳି ହନ୍ତ ସିଂହଙ୍କର ମୃତ୍ୟୁ ।

୧୩—ବଙ୍ଗଳା କବି କରୁଣାକ୍ଷ ବାନାର୍ଜୀଙ୍କର ମୃତ୍ୟୁ ।

୧୪—ମହାତ୍ମା ଗାନ୍ଧୀଙ୍କର ସହକର୍ମୀ ଆଚାର୍ଯ୍ୟ ଜେ-ପି-ଉନିୟାଲାଙ୍କର ମୃତ୍ୟୁ । ରିପବ୍ଲିକାନ ଦଳର ନେତା ଏଚ-ଏନ୍-କୁମାରେଙ୍କର ମୃତ୍ୟୁ । ସ୍ୱାଧୀନତା ସଂଗ୍ରାମୀ ଓ ପୂର୍ବତନ ସୁପ୍ରିମ କୋର୍ଟ ଜଜ ଜେ-ଏଲ-କାପୁରଙ୍କର ମୃତ୍ୟୁ ।

୧୫—୪୦ଟି ମିରେଜ—୨୦୦୦ ବିମାନ ଭାରତକୁ ଦେବାପାଇଁ ଫ୍ରାନ୍ସ ଓ ଭାରତ ଭିତରେ ଚୁକ୍ତି ସ୍ୱାକ୍ଷରିତ । ଭାରତ କେନାଲରେ ଗୋଟିଏ ବସ୍ ଖସିପଡ଼ିବା ଫଳରେ ୭୦ ଜଣଙ୍କର ମୃତ୍ୟୁ । କେରଳର ରାଜ୍ୟପାଳ ରୂପେ ପି-ରାମଚନ୍ଦ୍ରନ ନିଯୁକ୍ତ । କାବେରୀ ଜଳ ପାଇଁ ତାମିଲନାଡୁ ବନ୍ଦ ।

୧୯—ଆହମେଦାବାଦର ଏକ ବାଣ କାରଖାନାରେ ୧୯ ଜଣ ବ୍ୟକ୍ତିଙ୍କର ମୃତ୍ୟୁ ।

୨୦ - ଏମ-ପି-ମୁକୁନ୍ଦ ମୋଷ୍ଟାଲଙ୍କର ମୃତ୍ୟୁ ।

୨୫—ତେଲଗୁ କବି କେ, ଅନ୍ତାନେୟୁଲୁଙ୍କର ମୃତ୍ୟୁ ।

୨୭—ଗାନ୍ଧୀଙ୍କର ଘରୋଇ ସେକ୍ରେଟେରୀ ପ୍ୟାରେଲାଲଙ୍କର ମୃତ୍ୟୁ ।

୩୧—ହୃଦୟ ଉପରେ ଅସ୍ତ୍ରୋପଚାରର ପରେ ରାଷ୍ଟ୍ରପତି ଜୈଲ ସିଂହଙ୍କର ଆମେରିକାରୁ ଭାରତ ପ୍ରତ୍ୟାବର୍ତ୍ତନ ।

## ନଭେମ୍ବର

୪—ପ୍ରଖ୍ୟାତ ଶିଳ୍ପପତି ବୀରେନ ମୁଖାର୍ଜୀଙ୍କର ମୃତ୍ୟୁ ।

୫—ଆଣ୍ଡାମାନ ଓ ନିକୋବରରେ ଏମ-ଏଲ-କମ୍ପାନୀ, ଲେଫ୍ଟନାଣ୍ଟ ଗଭର୍ଣ୍ଣର ରୂପେ ନିଯୁକ୍ତ । ଶିଳ୍ପପତି ରବି ବିରଳାଙ୍କର ମୃତ୍ୟୁ । ହିନ୍ଦୀ କବି ବିଜୟ ଦେଓ ନାରାୟଣ ଶାହୀଙ୍କର ମୃତ୍ୟୁ ।

୭—ବିଖ୍ୟାତ ଟ୍ରେଡ ୟୁନିୟନ ନେତା ଦିନକର ଦେଶାଇଙ୍କର ମୃତ୍ୟୁ ।

୮—ଗୁଜରାଟ ଘୂର୍ଣ୍ଣିବାତ୍ୟାରେ ୫୦୦ରୁ ଅଧିକ ବ୍ୟକ୍ତିଙ୍କର ମୃତ୍ୟୁ ।

୧୩ ପଞ୍ଜାବରେ ୩୯୦ ଜଣ ଅକାଳୀ ଗିରଫ ।

୧୪—ପୂର୍ବତନ ରାଷ୍ଟ୍ରମନ୍ତ୍ରୀ କୋଣ୍ଡାଜୀ ବାସାପ୍ପାଙ୍କର ମୃତ୍ୟୁ ।

୧୫—ଆଚାର୍ଯ୍ୟ ବିନୋବା ଭାବେଙ୍କର ମୃତ୍ୟୁ ।

୧୭—ନାଗାଲ୍ୟାଣ୍ଡରେ ଜମିର ମନ୍ତ୍ରୀମଣ୍ଡଳର ଶପଥ ଗ୍ରହଣ ।

୧୮—ବିଖ୍ୟାତ ତାମିଲ ଔପନ୍ୟାସିକ ଜାନକୀରମଣଙ୍କର ମୃତ୍ୟୁ ।

୧୯—ନୂଆଦିଲ୍ଲୀରେ ରାଷ୍ଟ୍ରପତିଙ୍କ ଦ୍ୱାରା ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ଉଦ୍‌ଘାଟନ ।

୨୧—ବିଖ୍ୟାତ କୁଟନୀତିଜ୍ଞ କେ-ପି-ଏସ୍ ମେନନଙ୍କର ମୃତ୍ୟୁ ।

୨୨—କୋହିମାସ୍ଥିତ ଚ୍ଛେଚେବା ନିକଟରେ ବସ୍ ଦୁର୍ଘଟଣାରେ ୧୫ ଜଣଙ୍କର ମୃତ୍ୟୁ ।

୨୨—ବେଲଗାଓଁ ଜିଲ୍ଲାରେ ଟ୍ରକ ଦୁର୍ଘଟଣାରେ ୧୮ ଜଣ ବ୍ୟକ୍ତିଙ୍କର ମୃତ୍ୟୁ ।

୨୬—ଜାନୁଆରୀ ୮ ତାରିଖରେ ଆନ୍ଧ୍ର, କର୍ଣ୍ଣାଟକ ଓ ତ୍ରିପୁରାରେ ନିର୍ବାଚନ ହେବା ପାଇଁ ଘୋଷଣା ।

୨୯—ସି-ପି-ଆଇ-ନେତା ପ୍ରମୋଦ ଦାସ ଗୁପ୍ତଙ୍କର ବେଇଜିଙ୍ଗରେ ମୃତ୍ୟୁ ।

## ଡିସେମ୍ବର

୪—ଏସୀୟ ଖେଳ ପ୍ରତିଯୋଗିତା ଶେଷ ।

୫—ଏମ-ପି-ମାମୁଦ ହୋସେନ ଖାନ୍‌ଙ୍କର ମୃତ୍ୟୁ ।

୮—ହିମାଚଳ ପ୍ରଦେଶର ପରିବହନ ମନ୍ତ୍ରୀ ଦେଶରାଜ ମହାଜନଙ୍କର ମୃତ୍ୟୁ । ବରୋଦାରେ କର୍ଫ୍ୟୁ ଆଦେଶ ଜାରୀ । ଉର୍ଦ୍ଦୁ ସମ୍ପାଦକ ରଣବୀର ସିଂହଙ୍କର ମୃତ୍ୟୁ । ଉଜ୍ଜୟିନୀ ନିକଟରେ ଘର ଭାଙ୍ଗିପଡ଼ିବାରୁ ୧୬ ଜଣଙ୍କର ମୃତ୍ୟୁ ।

୯—ଡକ୍ଟର ଏଚ-କେ-ଜୈନଙ୍କର ଡବାର ଲଗ ପୁରସ୍କାର ଲାଭ ।

୧୧—ଚୀନକୁ ସରକାରୀ ପ୍ରତିନିଧି ମାନଙ୍କର ଯାତ୍ରା ବାତିଲ ।

୧୨—କଂଗ୍ରେସ ଆଇ ସହିତ—ଏ. କେ ଆଣ୍ଟୋନିଙ୍କ କଂଗ୍ରେସର ମିଳନ ।

୧୪—ବରୋଦାରେ ଫ୍ଲାଗ୍ ମାର୍ଚ୍ଚ ପାଇଁ ସେନାକୁ ଡାକରା । ହିନ୍ଦୀ କବି ଇଲଚନ୍ଦ ଜୋଶୀଙ୍କର ମୃତ୍ୟୁ ।

୧୫—ବରୋଦାହିଂସାକାଣ୍ଡରେ ୧୮ ଜଣଙ୍କର ମୃତ୍ୟୁ ।

୧୬—ବରୋଦାରେ ଦଙ୍ଗା ଅବ୍ୟାହତ ।

୧୮—ଭିଏଟନାମର ବୈଦେଶିକ ମନ୍ତ୍ରୀ ମିଷ୍ଟର ନୁୟେନ କୋଅାଚଙ୍କର ଦିଲ୍ଲୀ ଆଗମନ । ସଂଯୁକ୍ତ କମିସନ ସ୍ଥାପନ ପାଇଁ ଭାରତ ଓ ଭିଏଟନାମ ମଧ୍ୟରେ ଚୁକ୍ତି ।

୨୩—ସଂଯୁକ୍ତ କମିସନ ସ୍ଥାପନ ପାଇଁ ଭାରତ ଓ ପାକିସ୍ତାନର ସମ୍ମତି ।

୨୪—ନଦୀଜଳ ବିବାଦ ଆଲୋଚନାରେ ଭାରତ ଓ ବାଙ୍ଗଲା ଦେଶର ଅଗ୍ରଗତି ।

୨୭—ଗୋଦାବରୀ ବେସିନରେ ତୈଳ ଆବିଷ୍କାର ।

୨୮—ଆଣ୍ଟାର୍କଟିକାରେ ଦ୍ୱିତୀୟ ଭାରତୀୟ ଅଭିଯାତ୍ରୀ ଦଳର ପଦାର୍ପଣ ।

**ଛିଭ ବ୍ରସ ହେଲା**

୧୯୬୦ ଶତାବ୍ଦୀରେ ଚୀନର ହୁଆଙ୍ଗ ଏରନାନ ଜଣେ ପ୍ରସିଦ୍ଧ ଚିତ୍ରକାର ଥିଲେ । ସେ ରଙ୍ଗ ଦେବାପାଇଁ ନିଜର ଛିଭକୁ ବ୍ରସ ରୂପେ ବ୍ୟବହାର କରୁଥିଲେ । ସେ ପିଲ୍‌କ

କନା ଉପରେ ଚିତ୍ର ଆଙ୍କୁଥିଲେ । ସେହି କନାକୁ ଟେବୁଲ ଉପରେ ବିଛାଇ ସେ ଡିଜ୍ରୁ ଦ୍ୱାରା ରଙ୍ଗ ଦେଉଥିଲେ । ତାଙ୍କର ଅଙ୍କନ ଭିତରେ ପଦ୍ମ ଫୁଲ ଓ ପ୍ରଜାପତି ପ୍ରଧାନ ଥିଲ ।

**ଫୁଲ ଅଲିମ୍ପିକ**

ଏବେ ମ୍ୟୁନିକରେ ଚତୁର୍ଥ ଆନ୍ତର୍ଜାତୀୟ ଉଦ୍ୟାନ ପ୍ରଦର୍ଶନୀ ଅନୁଷ୍ଠିତ ହୋଇ ଯାଇଛି । ୭୨ ହେକ୍ଟର ଜମି ଉପରେ ଏ ପ୍ରଦର୍ଶନୀ ସଜ୍ଜିତ ହୋଇଥିଲା । ପ୍ରତି ଦଶ ବର୍ଷରେ ଥରେ ଏ ପ୍ରଦର୍ଶନୀ ଅନୁଷ୍ଠିତ ହୁଏ । ଏବେ ୨୪ଟି ଦେଶ ଏ ପ୍ରଦର୍ଶନୀରେ ଅଂଶ ଗ୍ରହଣ କରୁଛନ୍ତି । ପୃଥିବୀର ବହୁ ଦେଶରୁ ପ୍ରାୟ ଦଶ ନିୟୁତ ଲୋକ ଏ ପ୍ରଦର୍ଶନୀ ଦେଖିବାକୁ ଆସନ୍ତି । ଏଥିରେ ୨୨୫ ନିୟୁତ ମାର୍କସରୁ ଅଧିକ ଖର୍ଚ୍ଚ ହୁଏ ।

**ଅଦ୍ଭୁତ ଖେଳ**

୧୯୧୪ ମସିହା ଏପ୍ରିଲ ୧୨ ତାରିଖରେ ଅଷ୍ଟ୍ରେଲିଆର ନୋହାୟଙ୍କ ନାମକ ଜଣେ ବ୍ୟକ୍ତି ମେଲବୋର୍ଣ୍ଣରେ ଜଣେ ଲୋକକୁ ନିଜର ପିଠିରେ ବହନ କରି F ମିନିଟ ୩୦ ସେକେଣ୍ଡ ମଧ୍ୟରେ ଏକ ମାଇଲ ଦୌଡ ପୂର୍ଣ୍ଣ କରି ବିଶ୍ୱ ରେକର୍ଡ ସ୍ଥାପନ କରିଥିଲେ ଏ ଦୌଡ ବୀରଙ୍କର ଓଜନ ୧୯୮ ପାଉଣ୍ଡ ଓ ସେ ବହନ କରୁଥିବା ବ୍ୟକ୍ତିଙ୍କର ଓଜନ ୧୫୦ ପାଉଣ୍ଡ ।

**ଗ୍ରାମାଞ୍ଚଳରେ ଟେଲିଫୋନ**

ଭାରତର ଡାକ ସେବା ଏବେ ୧,୧୦୦ କୋଟି ଚିଠି, ୧୬ କୋଟି ଟେଲିଗ୍ରାମ ଓ ପ୍ରତିଦିନ ୩୦ ଲକ୍ଷ ଟେଲିଫୋନ କଲ୍ ଚଳାଇ ପାରୁଛନ୍ତି । ୧୯୭୨ ମସିହାରେ ଆମ ଦେଶରେ ୮୦୦୦ ଟେଲିଫୋନ ଥିଲା । ବର୍ତ୍ତମାନ ଆମ ଦେଶରେ ତିନି ନିୟୁତ ଟେଲିଫୋନ କାମ କରୁଛି । ସ୍ୱାଧୀନତା ପୂର୍ବରୁ କେବଳ ୫୦୦ ଗ୍ରାମ ଟେଲିଫୋନର ସୁବିଧା ପାଉଥିଲେ । ବର୍ତ୍ତମାନ ୨୦,୦୦୦ ଗ୍ରାମ ଟେଲିଫୋନ ସୁବିଧା ଉପଭୋଗ କରୁଛନ୍ତି ।

**ଅତି ଦ୍ରୁତମ ଦୌଡ**

କେନିୟାର ମାଇକ ବୟେଟ ଏପ୍ରିଲ ୯ ତାରିଖ ଦିନ ୩ ମିନିଟ ୨୮.୩୬ ସେକେଣ୍ଡ ମଧ୍ୟରେ ପାହାଡ ଉପରୁ ତଳକୁ ଏକ ମାଇଲ ଦୌଡ ପୂର୍ଣ୍ଣକରି ବିଶ୍ୱ ରେକର୍ଡ ସ୍ଥାପନ କରିଛନ୍ତି ।

**ପର୍ଯ୍ୟଟନରୁ ଆୟ**

୧୯୮୪ ମସିହାରେ ୧.୨ ନିୟୁତ ବିଦେଶୀ ପର୍ଯ୍ୟଟକ ଭାରତ ଭ୍ରମଣରେ ଆସିବାର ଆଶା କରଯାଉଛି । ଏହା ଫଳରେ ୧୦୦୦ କୋଟି ଟଙ୍କା ମୂଲ୍ୟର ବୈଦେଶିକ ମୁଦ୍ରା ଭାରତ ଆୟ କରିପାରେ । ଏ କ୍ଷେତ୍ରରେ ୧୯୮୧ ମସିହାରେ ଭାରତ ଆୟ ଥିଲା ୭୦୦କୋଟି

ଟଙ୍କା, ୧୯୮୨ ମସିହାରେ ୨୫୦ କୋଟି ଟଙ୍କା ଓ ୧୯୮୩ ମସିହାରେ ୮୧୦ କୋଟି ଟଙ୍କା ।

**ଋଷର ରାଜ୍ୟ ପାଠାଗାର**

ଋଷର 'ଅଲ ୟୁନିୟନ ଷ୍ଟେଟ ଲାଇବ୍ରେରୀ ଅଫ ଫରେନ ଲିଟରେଚର'ରେ ୧୩୫ଟି ଭାଷାର ୫ ନିୟୁତ ବହି ରହିଛି । ପ୍ରତିବର୍ଷ ଏ ଲାଇବ୍ରେରୀ ପାଠକମାନଙ୍କୁ ୩ ନିୟୁତ ବହି, ପତ୍ରିକା, ଜର୍ଣ୍ଣାଲ ଓ ସମ୍ବାଦପତ୍ର ପଢ଼ିବା ନିମନ୍ତେ ଯୋଗାଇଥାଏ । ପ୍ରତିବର୍ଷ ଏ ଲାଇବ୍ରେରୀରେ ୫୦,୦୦୦-୪୦,୦୦୦ ବହି ଓ ୩୫୦୦ ପତ୍ରପତ୍ରିକା ବୃଦ୍ଧି ପାଉଛି ।

**ଭାରତରେ ଶିଶୁ ମୃତ୍ୟୁ**

ଭାରତରେ ପ୍ରତି ୧୦୦୦ରେ ୧୨୦ ଜଣ ଶିଶୁ ଅକାଳ ମୃତ୍ୟୁର ଶିକାର ହୁଅନ୍ତି । ମା ସ୍ତନ ପାନ ବନ୍ଦ କରାଇଦେବା ଫଳରେ ଝାଡା ପ୍ରଭୃତି ରୋଗରେ ଆକ୍ରାନ୍ତ ହୋଇ ଅଧିକାଂଶ ଶିଶୁ ମରନ୍ତି ।

**ଭାରତର ଜେଲରେ ବନ୍ଦୀ ସଂଖ୍ୟା**

ବର୍ତ୍ତମାନ ଭାରତର ଜେଲ ଗୁଡ଼ିକରେ ମୋଟ ୧,୫୯,୬୯୨ ଜଣ ବନ୍ଦୀ ଅଛନ୍ତି । ଏମାନଙ୍କ ମଧ୍ୟରୁ ୯୨,୨୭୬ ଜଣ ବିଚାରଧୀନ ବନ୍ଦୀ । ଏମାନଙ୍କ ମଧ୍ୟରୁ ମହିଳାଙ୍କର ସଂଖ୍ୟା ୨୬୭୩ ।

**ସିଲ୍କ ଉତ୍ପାଦନ ବୃଦ୍ଧି**

୧୯୬୮ ମସିହାରେ ଭାରତରେ ୨୧୭୦ ଟନ ସିଲ୍କ ଉତ୍ପାଦିତ ହୋଇଥିଲା । ୧୯୮୨ ମସିହାରେ ଏ ଉତ୍ପାଦନ ୫୨୫୦ ଟନକୁ ବୃଦ୍ଧି ପାଇଛି । ମାଲବେରି ବୃକ୍ଷରେ ପଶମ ପୋକ ପାଳନ କରି ପଶମ ଉତ୍ପାଦନ କରାଯାଉଛି ।

**ମୃତ୍ୟୁ ହାର ହ୍ରାସ**

୧୯୫୧—୬୦ ମସିହା ମଧ୍ୟରେ ମୃତ୍ୟୁହାର ପ୍ରତି ୧୦୦୦ ବ୍ୟକ୍ତିଙ୍କ ମଧ୍ୟରେ ଥିଲା ୨୨.୮ । ୧୯୭୧—୮୦ ମସିହା ମଧ୍ୟରେ ଏହା ୧୪.୮ କୁ ହ୍ରାସ ପାଇଛି । ଜନ-ସ୍ୱାସ୍ଥ୍ୟ ନିମନ୍ତେ କରାଯାଇଥିବା ବିଭିନ୍ନ ଯୋଜନାର ଫଳସ୍ୱରୂପ ମୃତ୍ୟୁହାର ହ୍ରାସ ପାଇଛି ।

**କଣ୍ଟକ ଶଯ୍ୟାରେ ୨୫୪ ଘଣ୍ଟା**

ଅଷ୍ଟ୍ରେଲିୟାର ସିଡନୀରେ ଜଣେ ଜେନ୍ ନାମକ ଫକୀର ୧୯୬୯ ମସିହା ନଭେମ୍ବର ୨୦ ତାରିଖରେ ଖଣ୍ଡିଏ କୌପୀନ ପିନ୍ଧି ୬ ଇଞ୍ଚ ଲମ୍ବ ତୀକ୍ଷ୍ଣକଣ୍ଟକ ଶଯ୍ୟାରେ ୨୫୪ ଘଣ୍ଟା ଶୟନ କରି ବିଶ୍ୱ ରେକର୍ଡ ସ୍ଥାପନ କରିଥିଲେ ।

**ଆଧୁନିକ ବିଶ୍ୱର ସାତଟି ବିସ୍ମୟ**

ଇଜିପ୍ଟର ପିରାମିଡ଼—ଖ୍ରୀଷ୍ଟପୂର୍ବ ୨୦୦୦ ବର୍ଷରେ ଏ ପିରମିଡ ଗୁଡ଼ିକ ନିର୍ମିତ ।

ଏହା ଇଜିପ୍ଟର ରଜାମାନଙ୍କର କବର । ଏଲଗିଜେରେ ଥିବା ଚିଅପଙ୍କର ପିରାମିଡ଼ ସର୍ବବୃହତ ଓ ଏହା ୧୪୭ ମିଟର ଉଚ୍ଚ ।

**ବେବିଲୋନର ଝୁଲା ଉଦ୍ୟାନ**

ନେବୁଗଡ ନେଜାର ପ୍ରାସାଦ ନିକଟରେ ଏ ଉଦ୍ୟାନ ଅବସ୍ଥିତ । ଏହା ୨୩ ରୁ ୯୧ ମିଟର ଉଚ୍ଚକୁ ଉଠିଥିଲା । ଏହା ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀରେ ନିର୍ମିତ ହୋଇଥିଲା । ରଜା ଫିସେ ଓ ତାଙ୍କର ରଣୀ ଏ ଉଦ୍ୟାନ ନିର୍ମାଣ କରଇଥିଲେ ।

**ଅଲିମ୍ପିଆର ଜିୟସ ମୂର୍ତ୍ତି**

ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ଅଲିମ୍ପିକ ଖେଳର ପ୍ରଥମ ସ୍ଥାନରେ ୧୨ ମିଟର ଉଚ୍ଚ ଜିୟସ ମୂର୍ତ୍ତି ଫିଡ଼ୟାସ ନିର୍ମାଣ କରିଥିଲେ । ଏହା ହସ୍ତୀଦନ୍ତ ଓ ସ୍ୱର୍ଣ୍ଣ ଦ୍ୱାର ନିର୍ମିତ । ଏ ମୂର୍ତ୍ତି ଜୁପିଟରଙ୍କର ସିଂହାସନରେ ଆସୀନ ମୂର୍ତ୍ତି ।

**ଏଫେସସର ଡାଏନା ମନ୍ଦିର**

ଏ ମନ୍ଦର ମର୍ମର ପ୍ରସ୍ତରରେ ନିର୍ମିତ । ଏହା ୧୨୨ ମିଟର ଲମ୍ବ ଓ ୧୮ ମିଟର ଉଚ୍ଚ । ଏଥିଲେ ୧୦୦ ଟି ଶ୍ରେଣୀ ଅଛି । ଏହା ଖ୍ରୀଷ୍ଟପୂର୍ବ ୩୫୦ ରେ ଆରମ୍ଭ ହୋଇଥିଲା । ଏହାର ନିର୍ମାଣ ସମ୍ପୂର୍ଣ୍ଣ ହେବା ନିମନ୍ତେ ୧୨୦ ବର୍ଷ ଲାଗିଥିଲା । ୨୬୨ ଖ୍ରୀଷ୍ଟାବ୍ଦରେ ଗୋଥମାନେ ଏ ମନ୍ଦରକୁ ଧ୍ୱଂସ କରିଦେଇଥିଲେ ।

**ହ ଲିକାର୍ଣ୍ଣାସସର ମୁସୋଲିୟମ**

ଏସିୟା ମାଇନରସ୍ଥିତ କାରିୟାର ରଣୀ ଆର୍ଟେମିସିୟା ତାଙ୍କର ପତି ରାଜା ମୁସୋଲସଙ୍କର ସ୍ମୃତିରକ୍ଷା ନିମନ୍ତେ ଏ ମୁସୋଲିୟମ ନିର୍ମାଣ କରାଇଥିଲେ । ଖ୍ରୀଷ୍ଟପୂର୍ବ ୩୫୩ ରେ ମୁସୋଲସଙ୍କର ମୃତ୍ୟୁ ହେଲା । ଏହାର ଉଚ୍ଚତା ୪୩ ମିଟର । ଏ ମୁସୋଲିୟ-ମର କିଛି ଅଂଶ ଏବେ ବ୍ରିଟାଶ ମ୍ୟୁଜିୟମରେ ସୁରକ୍ଷିତ ।

**ରୋଡେସର କଲୋସସ**

ସୂର୍ଯ୍ୟଙ୍କର ବିରାଟ ତାମ୍ର ମୂର୍ତ୍ତି । ଏହା ରୋଡେସର ବନ୍ଦରର ପ୍ରବେଶ ପଥରେ ଅବସ୍ଥିତ । ପ୍ରସିଦ୍ଧ ଭାସ୍କର ଖରେସ ଦୀର୍ଘ ୧୨ ବର୍ଷ ପରିଶ୍ରମ କରି ଏ ମୂର୍ତ୍ତି ସମ୍ପୂର୍ଣ୍ଣ କରିଥିଲେ । ଖ୍ରୀଷ୍ଟପୂର୍ବ ୨୨୪ ରେ ଭୂମିକମ୍ପ ଫଳରେ ଏ ମୂର୍ତ୍ତି ନଷ୍ଟ ହୋଇ ଗଲା ।

**ଆଲେକଜାଣ୍ଡ୍ରିୟାର ଫାରୋସ**

ଆଲେକଜାଣ୍ଡ୍ରିୟାର ଫାରୋସ ଦ୍ୱୀପରେ ଖ୍ରୀଷ୍ଟପୂର୍ବ ୨୭୦ରେ ଏ ମାର୍ବଲ ନିର୍ମିତ ବତିଘର ଓ ଅଗ୍ନି ଟାୱାର ନିର୍ମିତ ହୋଇଥିଲା । ଏହାର ଉଚ୍ଚତା ୧୨୨ ମିଟର । ୧୩୭୫ ଖ୍ରୀଷ୍ଟାବ୍ଦର ଭୂମିକମ୍ପ ଏ ଲାଇଟ ହାଉସକୁ ଧ୍ୱଂସ କରିଦେଲା ।

**ମୁଁ ଉପକୁଳପତି ହେବାକୁ ଋହେଁ**

ମୁଁ ଏକ ଦୃଢ଼, ପକ୍ଷପାତହୀନ ଏବଂ ନ୍ୟାୟକାରୀ ଉପକୁଳପତି ହେବାକୁ ଋହେଁ । ଆଜିକାଲି ବିଶ୍ୱବିଦ୍ୟାଳୟ ଗୁଡ଼ିକ ସହ ମହାବିଦ୍ୟାଳୟ ଗୁଡ଼ିକର ସେପରି କୌଣସି ବିଶେଷ ଖରପ ସମ୍ପର୍କ ରହୁଛି ବୋଲି ମୁଁ କାହିଁକି ଦେଖି ପାରୁନାହିଁ । ସବୁ ମହାବିଦ୍ୟାଳୟର ବିଶ୍ୱବିଦ୍ୟାଳୟର ଗୋଟାଏ ଗୋଟାଏ ଅଙ୍ଗ, ତେଣୁ ବିଶ୍ୱବିଦ୍ୟାଳୟକୁ ବାଦ୍ ଦେଇ କଲେଜର ପରିଚାଳନା କେତେଦୂର ସମ୍ଭବ କି ?

"ତେଣୁ ମୁଁ ବିଶ୍ୱବିଦ୍ୟାଳୟ ସହ ସବୁ ମହାବିଦ୍ୟାଳୟର ସୁସମ୍ପର୍କ ରଖିବାକୁ ଚେଷ୍ଟା କରିବି । ମୁଁ ନିଜ ପାଇଁ ସବୁ ମହାବିଦ୍ୟାଳୟର ଛାତ୍ରମାନଙ୍କୁ ଭେଟି ସେମାନଙ୍କର ବିଭିନ୍ନ ସମସ୍ୟା ସମ୍ପର୍କରେ ବୁଝିବାକୁ ଚେଷ୍ଟା କରିବି । ପ୍ରତି ମାସରେ ସେମାନଙ୍କ ମହାବିଦ୍ୟାଳୟ ସମ୍ପର୍କରେ ମଧ୍ୟ ପାଠ ପଢ଼ାଠାରୁ କଲେଜ, ରାଜନୀତି ସମ୍ପର୍କୀୟ ଘଟଣାବଳୀ ଲେଖି ମୋତେ ଜଣାଇବାକୁ ଉଭୟେ କଲେଜର ଅଧ୍ୟକ୍ଷ ଏବଂ ଛାତ୍ରନେତାମାନଙ୍କୁ ଅନୁରୋଧ କରିବି ।

**ମୁକ୍ତ ଆକାଶ ତଳେ ଶୋଇବା ସ୍ୱାସ୍ଥ୍ୟ ପକ୍ଷରେ ହିତକାରକ**

ବାହାରେ ଶୋଇବା ବଳବର୍ଦ୍ଧକ ଟନିକ୍ ଭଳି କାମ କରିଥାଏ ଏବଂ ବିଶେଷକରି ଏହା ଶୁକ୍ର ତିଆରି କରିବାରେ ସାହାଯ୍ୟ କରିଥାଏ ବୋଲି ସୋଭିଏତ୍ ରୁଷର ଚିକିତ୍ସକମାନେ ଜାଣି ପାରିଥିବାର ପ୍ରକାଶ ।

ସାଧାରଣତଃ ଭାରତ ଭଳି ଗ୍ରୀଷ୍ମପ୍ରଧାନ ଦେଶମାନଙ୍କରେ ଲୋକମାନେ ଖରାଦିନେ ବାହାରେ ଶୋଇଥାନ୍ତି ।

ଏଇ ଚିକିତ୍ସକମାନେ ଜାଣିପାରିଛନ୍ତି ଯେ, ବାହାରେ ଶୋଇବା ଦ୍ୱାରା ଶରୀର ସ୍ନାୟୁ ବ୍ୟବସ୍ଥା ଶକ୍ତିଶାଳୀ ହେବ । ଏହାଦ୍ୱାରା ଶରୀର ଭିତରକୁ ବହୁ ପରିମାଣରେ ଅମ୍ଳଜାନ ଯିବାଦ୍ୱାରା ଫୁସ୍‌ଫୁସ୍‌କୁ କାର୍ଯ୍ୟକାରୀ କରାଇବାରେ ସାହାଯ୍ୟ ମଧ୍ୟ କରିଥାଏ । ବାହାରେ ଶୋଇବା ଦ୍ୱାରା ରକ୍ତ ସଂଚାଳନ ଏବଂ ହୃତ୍ ସ୍ପନ୍ଦନ ଯଥେଷ୍ଟ ଭଲ ଭାବରେ ହୋଇଥାଏ । ସୁତରାଂ ହୃଦରୋଗୀମାନେ ବାହାରେ ଶୋଇବା ଲାଗି ସୋଭିଏତ୍ ଡାକ୍ତରମାନେ ପରାମର୍ଶ ଦେଇଥାନ୍ତି ।

ଏତଦ୍ ବ୍ୟତୀତ ଡାକ୍ତରଖାନା ମାନଙ୍କରେ ଚିକିତ୍ସିତ ହେଉଥିବା ରୋଗୀମାନଙ୍କୁ ମଧ୍ୟ ବାହାରେ ଶୁଆଇବା ଲାଗି ଏମାନେ ପରାମର୍ଶ ଦେଇ କହିଛନ୍ତି ଯେ, ଏହା ଫଳରେ ଉଭୟେ ରୋଗୀ ଏବଂ ସୁସ୍ଥ ଲୋକମାନେ ଉପକାର ପାଇପାରିବେ ।

ଏହି ଡାକ୍ତରମାନେ ମଧ୍ୟ ସବୁ ସମୟରେ ବାହାରେ ଶୋଇବାକୁ ପରାମର୍ଶ ଦେଇଥାନ୍ତି । ସେମାନଙ୍କ ମତରେ ବାହାରେ ଶୋଇବା ଦ୍ୱାରା ଶରୀର ଶୀତର ପ୍ରକୋପକୁ ସହି ନେବାକୁ ବିଶେଷ ଅସୁବିଧା ହେବନାହିଁ ।

ସହର ଏବଂ ନଗରମାନଙ୍କରେ ସାଧାରଣ ରୁଦ୍ଧ କୋଠରୀରେ ଦିନରେ ରହୁଥିବା ବ୍ୟକ୍ତିମାନଙ୍କୁ ରାତିରେ ବାଲକୋନୀ କିମ୍ବା ବାରଣ୍ଡାରେ ଶୋଇବାକୁ ପରାମର୍ଶ ଦେଇଛନ୍ତି ।

ଏହାଦ୍ୱାରା ସେମାନଙ୍କର କ୍ଲାନ୍ତି ଦୂର ହେବା ସଙ୍ଗେ ସଙ୍ଗେ କାମ କରିବା ପାଇଁ ଶକ୍ତି ସଞ୍ଚୟ ହୋଇପାରିବ ।

ସବୁବେଳେ ଭିତରେ ରହୁଥିବା ଲୋକମାନେ ସାଧାରଣତଃ ଉତ୍ତମ ଅମ୍ଳଜାନ ପାଆନ୍ତି ନାହିଁ, ସୁତରାଂ ସେମାନେ ନାନା ରୋଗରେ ଆକ୍ରାନ୍ତ ହୋଇଥାନ୍ତି ।

ଏବେ ସବୁ ଲୋକମାନଙ୍କୁ ଏହି ବିନା ଖରଚରେ ମିଳୁଥିବା ଟନିକ୍ ପାଇବା ଲାଗି ଖଟଖଣ୍ଡେ, ଶପଟାଏ ବା ଚଟିଆଟାଏ ନେଇ ବାହାରେ ଡେରି ନ କରିବାକୁ ସୋଭିଏତ୍ ଡାକ୍ତରମାନେ ସତର୍କ କରିଦେଇଛନ୍ତି । ସେମାନଙ୍କ ମତରେ ହୃଦଯନ୍ତ୍ର ଏବଂ ଗଳାରୋଗରେ ଆକ୍ରାନ୍ତ ଥିବା ଲୋକମାନେ ବାହାରେ ଶୋଇବା ପୂର୍ବରୁ ଡାକ୍ତରମାନଙ୍କର ପରାମର୍ଶ କରିବା ଉଚିତ ।

**ପୋଲିସ୍ ଗୁଳିରେ ୧୫୦୦ ଲୋକଙ୍କ ମୃତ୍ୟୁ**

ଗତବର୍ଷ ପୋଲିସ୍ ଗୁଳିରେ ଭାରତରେ ପ୍ରାୟ ୧୫୦୦ ଲୋକଙ୍କର ମୃତ୍ୟୁ ଘଟିଛି ବୋଲି ରାଜନୈତିକ ବନ୍ଦୀମାନଙ୍କ ମୁକ୍ତିପାଇଁ ଗଠିତ କମିଟି ତଥ୍ୟ ପ୍ରକାଶ କରିଛନ୍ତି । ନାଗରିକ ଅଧିକାରର ସୁରକ୍ଷା ପାଇଁ ଗଠିତ ଏହି ନୂତନ କମିଟି ଦ୍ୱାରା ପ୍ରକାଶିତ ତଥ୍ୟ ବାସ୍ତବିକ୍ ଉଦ୍‌ବେଗ ସୃଷ୍ଟି କରିଛି । ପୋଲିସ୍ ଗୁଳିରେ ସାଧାରଣତଃ ଆନ୍ଦୋଳନକାରୀଙ୍କର ମୃତ୍ୟୁହୁଏ । ଗୋଟିଏ ବର୍ଷରେ ଏପରି ୧୫୦୦ ଲୋକଙ୍କର ମୃତ୍ୟୁହେବା କିଛି କମ୍‌କଥା ନୁହେଁ । ଭିନ୍ନମତ ପୋଷଣ କରିବାର ଅଧିକାର ପ୍ରତ୍ୟେକ ନାଗରିକଙ୍କର ରହିଛି । ଏହାକୁ ବନ୍ଦ କରଯାଇ ପାରିବ ନାହିଁ । ଦେଶ ସ୍ୱାଧୀନ ହେବାର ୩୫ ବର୍ଷ ପରେ ମଧ୍ୟ ପୋଲିସ୍ ଦୃଷ୍ଟିଭଙ୍ଗୀ କିମ୍ବା ପୋଲିସ୍ ଆଇନର ବିଶେଷ ପରିବର୍ତ୍ତନ ହୋଇନାହିଁ । ଫଳରେ ଭାରତୀୟ ସମ୍ବିଧାନର ସମସ୍ତ ମୌଳିକ ଅଧିକାର ଲିପିବଦ୍ଧ ହୋଇ ରହିଥିବା ସତ୍ତ୍ୱେ ଭାରତରେ ନାଗରିକ ଅଧିକାର ସୁରକ୍ଷିତ ନୁହେଁ ବୋଲି ଆମନେଷ୍ଟି ଇଣ୍ଟର ନେସନାଲ ରିପୋର୍ଟ ଦେଇଛି । ବିଶ୍ୱର ସର୍ବବୃହତ ଗଣତାନ୍ତ୍ରିକ ରାଷ୍ଟ୍ର ଭାବରେ ଭାରତର ଭାବ ମର୍ଯ୍ୟାଦା ନଷ୍ଟ ହେଉଛି ।

**କନ୍ୟା ବୋଝ୍ ଲାଘବ ପାଇଁ ଉଦ୍ୟମ**

ଗତ କେତେବର୍ଷ ହେଲା ଦେଖାଯାଇଛି ଯେ, ଭାରତୀୟ ଦମ୍ପତିମାନେ କନ୍ୟା ସନ୍ତାନଟିଏ ହେଲେ ଏହାକୁ ଏକ ଅଭିଶାପ ରୂପେ ସେମାନେ ଧରି ନେଇଛନ୍ତି । ଅବଶ୍ୟ ଏହା ପଛରେ ବହୁବିଧ ଅର୍ଥନୈତିକ କାରଣ ରହିଛି । ସମ୍ପ୍ରତି ଦିଲ୍ଲୀ, କଲିକତା, ବମ୍ବେ ନଗରୀଗୁଡ଼ିକରେ ( ସେକସ ଟେଷ୍ଟ ) ଲିଙ୍ଗ ପରୀକ୍ଷା ଚାଲିଛି । ମା' ପେଟରେ କନ୍ୟା ଶିଶୁର ଆଗସମ୍ବାଦରେ ଗର୍ଭପାତ କରଯାଉଛି । କାରଣ ସାମ୍ପ୍ରତିକ ଅର୍ଥନୈତିକ ସମସ୍ୟା ବହୁଳ ସଂସାରରେ କନ୍ୟାଟିଏ ପାଳନ ନିମନ୍ତେ ପିତାମାତା ଅନିଚ୍ଛୁକ, ସେମାନେ ଏହାକୁ ଅତ୍ୟଧିକ ବୋଝ୍ ମନେ କରୁଛନ୍ତି ।

ଏହି ମନୋଭାବ ଖାଲି ଭାରତରେ ନୁହେଁ ସମ୍ପ୍ରତି ଚୀନ ଦମ୍ପତିମାନଙ୍କ ମଧ୍ୟରେ ପ୍ରବେଶ କଲାଣି । ଜଣାପଡ଼ୁଛି ଯେ, ଗତ କେତେବର୍ଷ ହେଲା ସେଠାରେ କନ୍ୟା ସନ୍ତାନ

ମାନଙ୍କୁ ନିପାତ କରଯାଉଛି । ବେଜିଂ ମ୍ୟୁନିସପାଲ ସ୍ୱାସ୍ଥ୍ୟ ବୋର୍ଡର ସଭାପତି ତାଙ୍କ ପ୍ରଣୀତ ଏକ ଲେଖାରେ ଦର୍ଶାଇଛନ୍ତି ଯେ, ଗତବର୍ଷ ସଂଖ୍ୟାଧିକ ପିତା ସେମାନଙ୍କ କନ୍ୟା ସନ୍ତାନ ହତ୍ୟାକରିବା ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହୋଇ କାରାରୁଦ୍ଧ ହୋଇଥିଲେ । ଏପରିକି ସେଠାକାର ନାରୀମାନେ ମଧ୍ୟ ଆଉ କନ୍ୟା ସନ୍ତାନ ପ୍ରସବ କରିବାକୁ ଚାହୁଁନାହାନ୍ତି । ଜଣାଯାଏ ଏହା ଫଳରେ ଚୀନର କେତେକ ଅଞ୍ଚଳରେ କନ୍ୟାସନ୍ତାନ ସଂଖ୍ୟାରେ ତାରତମ୍ୟ ଦେଖାଗଲାଣି ।

ତା'ହେଲେ ବିଶ୍ୱରୁ କ'ଣ ନାରୀବଂଶ ଲୋପ ପାଇଯିବ ?

ପୃଥିବୀର ଅନ୍ୟଦେଶ ତୁଳନାରେ ଭାରତ ତା'ର ବୈଦେଶିକ ନୀତିରେ ବରାବର ନିରପେକ୍ଷ ନୀତି ଅବଲମ୍ବନ କରିଆସିଛି । କ୍ଷେତ୍ରୀୟ ସହଯୋଗରେ ଭାରତ ବରାବର ରଚନାତ୍ମକ ଦୃଷ୍ଟି ରଖିଆସିଛି ଏବଂ ପ୍ରତିଟି ଦେଶ ସହ ଭାରତ ନିଜର ଆନ୍ତର୍ଜାତିକ ବୈଷୟିକ ସହଯୋଗ ରକ୍ଷା କରିବାକୁ ମଧ୍ୟ ଆଗ୍ରହୀ ।

ପୃଥିବୀର କୌଣସି ଗୋଟିଏ ରାଷ୍ଟ୍ର ଏ ସବୁ କ୍ଷେତ୍ରରେ ଆତ୍ମନିର୍ଭରଶୀଳତା ହେବାପାଇଁ ହେଲେ ଅନ୍ୟଦେଶ ମାନଙ୍କର ସାହାଯ୍ୟ ଏବଂ ସହଯୋଗ ଯେ ଏକାନ୍ତ ଆବଶ୍ୟକ ଏ କଥାକୁ ସହଜରେ ଏଡ଼ାଇ ଦେଇ ହେବନାହିଁ । ଅନ୍ୟଦେଶ ତୁଳନାରେ ଭାରତ ଏକ ବିରାଟ ଦେଶ, ଏହାର ସାମୁହିକ ଉନ୍ନତି ପାଇଁ; ତାହାକୁ ଅନ୍ୟଦେଶମାନଙ୍କ ସାହାଯ୍ୟ ଏବଂ ସହଯୋଗ ଉପରେ ନିର୍ଭର କରିବାକୁ ପଡ଼ଥାଏ ।

**ଟେଲିଫୋନର ମଜା**

ଆଜ୍ଞା, ଦେଖନ୍ତୁ, ଏବେ କିପରି ଚାରିଜଣ ଶହଶହ କିଲୋମିଟର ଦୂରରେ ରହି ଭିନ୍ନ ଭିନ୍ନ ସ୍ଥାନରେ ବସିଲା ଭଳି ଗୋଟିଏ ଘର ମଧ୍ୟରେ ବାର୍ତ୍ତାଳାପ କରୁଛନ୍ତି । କେନ୍ଦ୍ର ଟେଲି ଯୋଗାଯୋଗ ବିଭାଗ ପକ୍ଷରୁ ମାଡ୍ରାସରେ ଏହା ଆୟୋଜିତ ହୋଇଯାଇଛି । ଏହାକୁ ଟେଲି କନ୍‌ଫରେନ୍‌ସ୍ ନାମରେ ନାମିତ କରଯାଇଛି ।

ନିର୍ଦ୍ଧାରିତ କାର୍ଯ୍ୟକ୍ରମାନୁଯାୟୀ ଜଣେ ରାଇ ବାଙ୍ଗାଲୋର ଓ ମାଡ୍ରାସ ମଧ୍ୟରେ ଯାତ୍ରା କରୁଥିବା ବିମାନରେ ବସିଥିବେ । ସେହି ସମୟରେ ଅନ୍ୟଜଣକ ଭେଜର କେଲେ-ରୁଜ ଜଳ ଜାହାଜରେ ସମୁଦ୍ରରେ ଥିବେ, ତୃତୀୟ ବ୍ୟକ୍ତି ପରିବହନ ନିଗମ ବସ୍‌ଯୋଗେ ସଡକ ପଥରେ ଯାଉଥିବେ ଏବଂ ଶେଷବ୍ୟକ୍ତି ଜଣକ ମାଡ୍ରାସ ଟେଲିଫୋନସ୍‌ର ଜେନେରାଲ ମ୍ୟାନେଜର, ସିଏକି ଜଣକୁ ଏକ ସଙ୍ଗରେ ଟେଲିଫୋନ୍ ସଂଯୋଗକରି କଥାବାର୍ତ୍ତା କରୁଥିବେ । କାର୍ଯ୍ୟକ୍ରମରେ ରାସ୍ତାରେ ଯାଉଥିବା ଅନ୍ୟାନ୍ୟ ସହଯାତ୍ରୀଙ୍କ ସହ ମଧ୍ୟ ଏଇ ଚାରିଜଣ କଥାବାର୍ତ୍ତା କରିପାରିଛନ୍ତି ।

**୧୦ ହଜାର ବାଲ୍ୟ ବିବାହ**

ବିବାହ ପାଇଁ ବର୍ଷର ପବିତ୍ର "ଅଖେତିଜ" ଦିବସ ଅବସରରେ ଗତକାଲି ରାଜ-ସ୍ଥାନରେ ୧୦ ହଜାରରୁ ଅଧିକ ଶିଶୁଙ୍କ ବିବାହ ଅନୁଷ୍ଠିତ ହୋଇଯାଇଛି । ଏହି

ଅବସରରେ ପ୍ରାୟ ପ୍ରତ୍ୟେକ ଗ୍ରାମରେ ହାରାହାରି ୫୦ରୁ ୬୦ଟି ବିବାହ ଅନୁଷ୍ଠିତ ହୋଇଥିଲା ।

ଶିଖମାନଙ୍କର ଏହି ବିବାହ ଉତ୍ସବ ସମୟରେ ଶିଖଙ୍କର କନ୍ୟାମାନେ ସେମାନଙ୍କ ପରିମାଣରେ କୋଳରେ ଶୋଇ ରହିଥିବା ଦେଖାଯାଇଥିଲା । ଗ୍ରାମର ମୁଖିଆ ବା ପରିବାରରେ ମୁଖ୍ୟଙ୍କ ଅନୁପସ୍ଥିତିରେ କେବଳ ପଣ୍ଡିତମାନଙ୍କ ଦ୍ୱାରା କେତେକ କ୍ଷେତ୍ରରେ ବିବାହ କାମ ସମ୍ପନ୍ନ ହୋଇଥିଲା ।

**ସେମାନେ କହିଛନ୍ତି**

ଜୈଲ ସିଂହ ଓ ଦରବାରା ସିଂହଙ୍କ ଭଳି ଶିଖମାନେ ଇନ୍ଦିରାଙ୍କ ଚପଲରୁ ଧୂଳି ଝାଡ଼ ସେଥିରେ ସେମାନଙ୍କ ପେଟ ଭର୍ତ୍ତି କରୁଛନ୍ତି ।

—ସହ କର୍ଣ୍ଣେଲ ସିଂହ ଭିନ୍ଦରେୱାଲ ।

ଆମେ ଦରିଦ୍ର ଲୋକ, ଆମେ ବନ୍ୟା ପରିସ୍ଥିତି ଆକାଶମାର୍ଗରୁ ପରିଦର୍ଶନ କରୁନା । ମୁଁ ଲୋକମାନଙ୍କ ଦରିଦ୍ର କୁଟୀରକୁ ସେମାନଙ୍କୁ ସାକ୍ଷାତ କରିବାକୁ ଯାଏ ମୋ ଆମ୍ବାର ଡାର କାରରେ ।

—ବେଗମ ଅବଦୁଲ୍ଲା

ବିଚର କେନ୍ଦ୍ର ସ୍ୱରଷ୍ଟ୍ରମନ୍ତ୍ରୀ ପି . ସି . ସେଠୀ, ନିଜ ଆସନରୁ ବାରମ୍ବାର ଉଠି ଆଲେକ୍‌ଜାଣ୍ଡାର ପାଖକୁ ଯିବାକୁ ପଡୁଛି । କିନ୍ତୁ ଆଲେକଜାଣ୍ଡାରରୁ ହିଁ ସ୍ୱରଷ୍ଟ୍ରମନ୍ତ୍ରୀଙ୍କ ପାଖକୁ ଆସିବା ଉଚିତ ।

—ଅଟଳ ବିହାରୀ ବାଜପାୟୀ

ବର୍ତ୍ତମାନର ସଙ୍କଟମୟ ସଂଘିକ୍ଷଣରେ କୌଣସି ଆମେରିକାନ ଟେଲିଭିଜନ ସଂସ୍ଥା, ଶ୍ରୀମତୀ ଗାନ୍ଧୀଙ୍କ ପ୍ରତି ସମାଲୋଚନା ଥିବା ଫିଲମ୍ କିଣିବେ ନାହିଁ ।

—ନୟନତାର ସେହଗାଲ

ସାମ୍ବାଦିକତା ହେଉଛି ଜଣେ ମହିଳା, ତା ପୋଷାକ ସହିତ କୌତୁକ କରିବା ସଦୃଶ ।

—କାଥେରିନ୍ ହ୍ୱାଇଟ୍ ହର୍ଣ୍ଣ

**ସ୍ୱାଡେନ ଓ ମାନବିକ ଅଧିକାର**

ସ୍ୱାଡେନ ମାନବିକ ଅଧିକାର ପ୍ରତି ସମ୍ମାନ ପ୍ରଦର୍ଶନ କରୁନାହିଁ । ସ୍ୱାଡେନ ସରକାର ନିକଟରେ ତାଙ୍କର ୨ ଜଣ ନାଗରିକଙ୍କ ସମ୍ପତ୍ତି ବାଜ୍ୟାପ୍ତ କରିବାରୁ ୟୁରୋପୀୟ କୋର୍ଟ ପକ୍ଷରୁ ଏହା କୁହାଯାଇଛି ।

**ଆମେରିକା ମାନବ ସମାଜକୁ ବିଶ୍ୱଯୁଦ୍ଧର ସମ୍ମୁଖୀନ କରାଉଛି**

ଯୁକ୍ତରଷ୍ଟ୍ର ଆମେରିକା ସମଗ୍ର ମାନବ ସମାଜକୁ ବିଶ୍ୱଯୁଦ୍ଧର ସମ୍ମୁଖୀନ କରଉଛି ବୋଲି ବିଶ୍ୱଶାନ୍ତି ପରିଷଦର ସଭାପତି ଶ୍ରୀ ରମେଶ ଚନ୍ଦ୍ର ଅଭିଯୋଗ କରିଛନ୍ତି ।

**ସୂର୍ଯ୍ୟଚୁଲା**

ସୂର୍ଯ୍ୟରଶ୍ମି ସାହାଯ୍ୟରେ ରୋଷେଇ କରିବା ପାଇଁ ନିର୍ମାଣ ହୋଇଥିବା ସୂର୍ଯ୍ୟ ଚୁଲା ଉଦ୍ଭାବନ ହୋଇଛି । ଏଥିରେ ଲାଗିଥିବା ପାରବୋଲିକ୍ କାଚର ଗୋଲେଇ ହେଉଛି ୧.୬ ମିଟର । ଏଥିରୁ ଏକ କିଲୋୱାଟ ଶକ୍ତି ଉତ୍ପନ୍ନ ହୋଇଥାଏ । ରହା ହେଉଥିବା ବାସନକୁ ଏହା ପାୟ ପାଞ୍ଚଶହ ୱାଟ ଶକ୍ତି ଯୋଗାଇ ପାରିବ । ଏଥିରେ ସବୁ ପ୍ରକାରର ରୋଷେଇ କରାଯାଇ ପାରିବ । ଗୋଟିଏ କିରୋସିନ ଷ୍ଟୋଭରେ ରାନ୍ଧିବା ପାଇଁ ଯେତିକି ସମୟ ଲାଗିଥାଏ, ଏଥିରେ ରାନ୍ଧିବା ପାଇଁ ସେତିକି ସମୟ ଲାଗିଥାଏ । ଏହି ନୂତନ ଧରଣର ସୂର୍ଯ୍ୟ ଚୁଲାଟିକୁ ଯେକୌଣସି ସ୍ଥାନକୁ ନେଇହେବ ଏବଂ ସହଜରେ ବ୍ୟବହାର କରିହେବ । ଏହାର ମୂଲ୍ୟ ପ୍ରାୟ ୬୦୦ ଟଙ୍କା । ପ୍ରତିଫଳଣ ନିମନ୍ତେ ବ୍ୟବହାର ହେଉଥିବା କାଚଟିକୁ ବେଳେବେଳେ ବଦଳାଇବାକୁ ପଡ଼େ । ଏହାର ମୂଲ୍ୟ ହେଉଛି, ପ୍ରାୟ ଦୁଇଶହ ଟଙ୍କା । ବର୍ଷକୁ ଗୋଟିଏ କାଚ ଲାଗିଥାଏ । ଗୋଟିଏ ସୂର୍ଯ୍ୟଚୁଲା ପ୍ରାୟ ୬ ବର୍ଷ ପର୍ଯ୍ୟନ୍ତ କାମ କରିଥାଏ ।

ଏହି ନୂତନ ଧରଣର ସୂର୍ଯ୍ୟ ଚୁଲାଟି ଗୋଟିଏ ଧାତବ ଦ୍ରବ୍ୟରେ ତିଆରି । ପ୍ରଥମେ ବାଉଁଶରେ ଏହା ତିଆରି ହେଉଥିଲା । ଏହାକୁ ଏପରି ରଖିବାକୁ ହେବ ଯେ, ଯେପରି ପାରବୋଲିକ୍ କାଚଟି ସୂର୍ଯ୍ୟଙ୍କ ଆଡ଼କୁ ମୁହଁକରି ରହିବ । ଏଥିରେ ଏକ ତନ୍ତୁଯୁକ୍ତ କାଚ ଅଛି । ଧାତବ ଦ୍ରବ୍ୟରେ ଏହା ନିର୍ମାଣ ହୋଇଥିବାରୁ ଜଳବାୟୁର ପରିବର୍ତ୍ତନ ଏହାର କିଛି କ୍ଷତି କରିପାରିବ ନାହିଁ । ଯେଉଁ ସବୁ ଅଞ୍ଚଳମାନଙ୍କରେ ଜାଳେଣୀ କାଠ ମିଳୁନାହିଁ, ସେଥିରେ ଏହାକୁ ବ୍ୟବହାରକରାଯାଇପାରିବ ।

**ବର୍ମାରେ ମହିଳାଙ୍କ ସଂଖ୍ୟା ବେଶୀ**

ବର୍ମାରେ ପୁରୁଷମାନଙ୍କ ଅପେକ୍ଷା ମହିଳାଙ୍କ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଛିବୋଲି ଏକ ରିପୋର୍ଟରେ କୁହାଯାଇଛି ।

୧୯୮୩-୮୪ ବର୍ମାରେ ଜନଗଣନା ରିପୋର୍ଟ ଅନୁଯାୟୀ ବର୍ମାର ଜନସଂଖ୍ୟା ୩୬୪୦୫ ନିୟୁତ । ତନ୍ମଧ୍ୟରୁ ୨୫ ବର୍ଷ ବୟସ ସୀମାତଳେ ୧୪୬୪ ନିୟୁତ ଜଣ ଅଛନ୍ତି । ପୁରୁଷମାନଙ୍କ ଅପେକ୍ଷା ମହିଳାମାନଙ୍କ ସଂଖ୍ୟା ୨୪୧୦୦୦ ଅଧିକ ବୋଲି ରିପୋର୍ଟରୁ ପ୍ରକାଶ ।

**ବେକାରୀ ସୃଷ୍ଟି ପାଇଁ ଯୋଜନା**

ଦେଶରେ ବେକାରୀ ସୃଷ୍ଟି ପାଇଁ ଯୋଜନା ପ୍ରଣୟନ କରାଯାଉ ଥିବାର ରାଷ୍ଟ୍ର ସୂଚନା କର୍ମ ଯୋଗାଣ ଓ ତାଲିମ ନିର୍ଦ୍ଦେଶକ ଜେନେରାଲଙ୍କ ରିପୋର୍ଟରୁ ଜଣାପଡୁଛି । ୧୯୮୧-୮୨ ମସିହାରେ ଉପଯୁକ୍ତ ପ୍ରାର୍ଥୀ ମିଳୁ ନ ଥିବାରୁ ବହୁ ସଂଖ୍ୟକ ଖାଲିସ୍ଥାନ ବାତିଲ ହୋଇଥିବା ଏହି ରିପୋର୍ଟରେ ଦର୍ଶାଯାଇଛି ।

କିନ୍ତୁ ଶିକ୍ଷା ମନ୍ତ୍ରଣାଳୟ ତାଙ୍କ ରିପୋର୍ଟରେ ଗର୍ବ କରୁଛନ୍ତି ଯେ ୧୯୮୦-୮୧ ତୁଳନାରେ ୮୧-୮୨ରେ ଉଚ୍ଚ ଶିକ୍ଷାରେ ଶତକଡା ୬.୩ ଭାଗ ଅଧିକ ଛାତ୍ରଛାତ୍ରୀ ନାମ ଲେଖାଇଛନ୍ତି । ଉଚ୍ଚ ଶିକ୍ଷାର ଦେଶରେ ଯେପରି ସଂପ୍ରସାରଣ ଘଟୁଛି । ସେହିପରି ବେକାରୀ ମଧ୍ୟ ବଢ଼ୁଛି । ଅଥଚ ଉପଯୁକ୍ତ ପ୍ରାର୍ଥୀ ନ ମିଳିବାରୁ ସ୍ଥାନ ଖାଲି ରହୁଛି ।

ଅର୍ଥାତ୍ ଦେଶର ଶିକ୍ଷ୍ୟା ଓ ମାନବ ଶକ୍ତି ଅନୁସାରେ ଯୋଜନା ହେଉନାହିଁ କିମ୍ବା ଯୋଜନା ଅନୁସାରେ ଆବଶ୍ୟକତାକୁ ଚାହିଁ ଶିକ୍ଷା ଓ ତାଲିମ ଦିଆଯାଉ ନାହିଁ ।

ଏଥିରୁ ଯେ କେହି ଭାବିବ ଯେ ବେକାରୀ ସୃଷ୍ଟିପାଇଁ ହିଁ ଦେଶରେ ଯୋଜନା କରାଯାଉଛି ।

**ପାଣିରେ ଚାଲିବା ପାଇଁ ଜୋତା**

ଡେନ୍‌ମାର୍କର ଜଣେ ଉଦ୍ଭାବକ 'ହ୍ରନରବ୍ୟୁଲେ' ଇତିମଧ୍ୟରେ ପାଣି ଉପରେ ମଣିଷ ଚାଲିବା ପାଇଁ ଏକ ଜୋତା ପ୍ରସ୍ତୁତ କରିଛନ୍ତି । ଏହି ଜୋତା ପିନ୍ଧି ଯେକୌଣସି ଲୋକ ସ୍ଥିର କିମ୍ବା କମ୍ ବେଗରେ ପ୍ରବାହିତ ପାଣି ଉପରେ ଚାଲିପାରିବେ । ଡେନ୍-ମାର୍କର "କୋପେନ୍‌ହାଗ୍ରେ" ଠାରେ ଅନୁଷ୍ଠିତ ହୋଇଥିବା ଅନ୍ତର୍ଜାତିକ ନୌକାଚାଳନା ପ୍ରତିଯୋଗିତାରେ ଏହି ଜୋତା ସର୍ବସାଧାରଣରେ ପରୀକ୍ଷା କରାଯାଇ ଥିଲା ।

**ଭିକ୍ଷୁକଙ୍କ ସଂଖ୍ୟା ୧ କୋଟି ୫୦ ଲକ୍ଷ**

ବର୍ତ୍ତମାନ ଭାରତରେ ପ୍ରାୟ ଏକ କୋଟି ୫୦ ଲକ୍ଷ ଭିକ୍ଷୁକ ଦାନଦାନ ଉପରେ କାଳାତିପାତ କରୁଛନ୍ତି ବୋଲି ଏକ ଅଟକଳରୁ ଜଣାପଡ଼ୁଛି, ଏହି ଭିକ୍ଷୁକ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଛି ।

ଭାରତୀୟ ଅପରାଧ ତତ୍ତ୍ୱ ସୋସାଇଟିର ଅଧ୍ୟକ୍ଷ ପ୍ରଫେସର ଏମ. ଏମ. ଡ଼ାଆଜ ଏ ବିଷୟରେ ସୂଚନା ଦେଇ କହିଛନ୍ତି ଯେ, ଭିକ୍ଷା ପ୍ରଥାକୁ କେବଳ ବେଆଇନ କରି ଦେଲେ, ଏହି ସମସ୍ୟାର ସମାଧାନ ହୋଇପିବନି । ଭିକ୍ଷୁକମାନଙ୍କ ଥଇଥାନ ଓ ସେମାନଙ୍କ ଭବିଷ୍ୟତ ପାଇଁ ସମନ୍ୱିତ କାର୍ଯ୍ୟକ୍ରମ କରିଅରେ ଏହି ସମସ୍ୟାର ସମାଧାନ କରିବାକୁ ସେ ଗୁରୁତ୍ୱ ଆରୋପ କରିଥିଲେ ।

**ଓଙ୍ଗସ ସଂପ୍ରଦାୟରେ ନୂତନ ଶିଶୁର ଆବିର୍ଭାବ**

ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜରେ ବସବାସ କରୁଥିବା "ଓଙ୍ଗସ" ସଂପ୍ରଦାୟର ସଂଖ୍ୟା କ୍ରମଶଃ ବିଲୁପ୍ତ ହେବାକୁ ଯାଉଥିବା ବେଳେ ଗତ ମାସରେ ଏହିଁ ସଂପ୍ରଦାୟରେ ଏକ ପୁତ୍ର ସନ୍ତାନ ଜନ୍ମ ଗ୍ରହଣ କରିଛି । ଫଳରେ ଏହି ସଂପ୍ରଦାୟର ସଂଖ୍ୟା ୯୮କୁ ବୃଦ୍ଧି ପାଇଛି । ଏହା ପୂର୍ବରୁ ୧୯୮୧ ମସିହା ଏପ୍ରିଲ ୧୬ ତାରିଖରେ ଗୋଟିଏ କନ୍ୟା ଏହି ସଂପ୍ରଦାୟରେ ଜନ୍ମ ଗ୍ରହଣ କରିଥିଲା ।

ବିଲୁପ୍ତ ହେବାକୁ ଯାଉଥିବା ଏହି ସଂପ୍ରଦାୟରେ ଶିଶୁ ଜନ୍ମ ଗ୍ରହଣକୁ ନୃତତ୍ତ୍ୱ-ବିତ ମାନେ ବିଶେଷ ଗୁରୁତ୍ୱ ଦେଉଛନ୍ତି । କାରଣ ଚଳିତ ଶତାବ୍ଦୀର ପ୍ରାରମ୍ଭରୁ ଏହି ସଂପ୍ରଦାୟର ଲୋକସଂଖ୍ୟା କ୍ରମଶଃ ହ୍ରାସ ପାଉଥିବାର ବିଷୟ ଜନଗଣନାରୁ ଜଣା-ଯାଇଥିଲା । ଏହି ସଂପ୍ରଦାୟ ସଂପର୍କରେ ପ୍ରଥମ ଜନଗଣନା ୧୯୦୧ରେ କରାଗଲା ବେଳେ ସେମାନଙ୍କ ସଂଖ୍ୟା ୬୬୨ ଥିଲା କିନ୍ତୁ ୧୯୩୧ ଜନଗଣନାରେ ତାହା ୨୫୦କୁ ଏବଂ ୧୯୭୧ ଜନଗଣନାରେ ୨୧୨କୁ ହ୍ରାସ ପାଉଥିଲା ।

**୧୯୮୦ରେ ୩:୬୩୨୭ ଟି ଗର୍ଭପାତ**

ସାରା ଦେଶରେ ୩୪୬୩୨୭ ଜଣ ମହିଳାଙ୍କର ନିୟମାନୁଯାୟୀ ଗର୍ଭପାତ ୧୯୭୯-୮୦ରେ କରାଯାଇଥିଲା । ୧୯୭୮-୭୯ରେ ଏହାର ସଂଖ୍ୟା ଥିଲା ୨୫୦୪୫୪ ଓ ୭୭-୭୮ରେ ୧୯୧ ୩୩୩ ।

ଉତ୍ତର ପ୍ରଦେଶର ୮୫୧୧୪ ଜଣ ମହାରାଷ୍ଟ୍ରର ୩୬,୭୪୯ ଜଣ, ତାମିଲନାଡୁର ୩୨୯୬୯୯ ଜଣ ଓ କେରଳର ୩୨୫୯୭ ଜଣ ୧୯୭୯-୮୦ରେ ସେ ପ୍ରାକୃତ ଉବେ ଗର୍ଭପାତ କରାଇଥିବାର ଜଣାପଡ଼ୁଛି ।

ଏଥି ମଧ୍ୟରୁ ହିନ୍ଦୁଙ୍କ ସଂଖ୍ୟା ଶତକଡ଼ା ୮୪.୬ ଭଗ, ମୁସଲମାନମାନଙ୍କ ସଂଖ୍ୟା ୭.୭ ଭର୍ଗ, ଖ୍ରିଷ୍ଟିୟାନମାନଙ୍କ ସଂଖ୍ୟା ୪.୩ ଭଗ, ଶିଖମାନଙ୍କ ସଂଖ୍ୟା ୨.୭ ଭଗ ଓ ଅନ୍ୟାନ୍ୟ ୦.୭ ଭଗ ଅଟେ ।

**ଓଡ଼ିଶାର ମୁଖ୍ୟମନ୍ତ୍ରୀ ବୃନ୍ଦ**

| | |
|---|---|
| ମହାରାଜା କୃଷ୍ଣଚନ୍ଦ୍ର ଗଜପତି | ୧ । ୪ । ୧୯୩୭ ଠାରୁ ୧୮ । ୭ । ୩୭ |
| ଶ୍ରୀଯୁକ୍ତ ବିଶ୍ୱନାଥ ଦାସ | ୧୯ । ୭ । ୩୭ ଠାରୁ ୬ । ୧୧ । ୩୯ |
| ମହାରାଜା କୃଷ୍ଣଚନ୍ଦ୍ର ଗଜପତି | ୨୪ । ୧୧ । ୪୧ ଠାରୁ ୩୦ । ୬ । ୪୪ |
| ଡକ୍ଟର ହରେକୃଷ୍ଣ ମହତାବ | ୨୩ । ୧ । ୪୬ ଠାରୁ ୧୧ । ୫ । ୫୦ |
| ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ | ୧୨ । ୫ । ୫୦ ଠାରୁ ୫ । ୪ । ୫୭ |
| ଡକ୍ଟର ହରେକୃଷ୍ଣ ମହତାବ | ୬ । ୪ । ୫୭ ଠାରୁ ୨ । ୨ । ୬୧ |
| ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ | ୨୩ । ୬ । ୬୧ ଠାରୁ ୧ । ୧୦ । ୬୩ |
| ଶ୍ରୀଯୁକ୍ତ ବୀରେନ୍ ମିତ୍ର | ୨ । ୧୦ । ୬୩ ଠାରୁ ୨୦ । ୨ । ୬୫ |
| ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ | ୨୧ । ୨ । ୬୫ ଠାରୁ ୮ । ୩ । ୬୭ |
| ରାଜେନ୍ଦ୍ର ନାରାୟଣ ସିଂହଦେଓ | ୯ । ୩ । ୬୭ ଠାରୁ ୯ । ୧ । ୭୧ |
| ଶ୍ରୀଯୁକ୍ତ ବିଶ୍ୱନାଥ ଦାସ | ୩ । ୪ । ୭୧ ଠାରୁ ୧୩ । ୬ । ୭୨ |
| ଶ୍ରୀମତୀ ନନ୍ଦିନୀ ଶତପଥୀ | ୧୪ । ୬ । ୭୨ ଠାରୁ ୩ । ୩ । ୭୩ |
| | ୬ । ୩ । ୭୪ ଠାରୁ ୧୬ । ୧୨ । ୭୪ |

ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟ　　୨୯ । ୧୨ । ୭୬ ଠାରୁ ୩୦ । ୪ । ୭୭
ଶ୍ରୀଯୁକ୍ତ ନୀଳମଣି ରାଉତରାୟ　　୨୨ । ୬ । ୭୭ ଠାରୁ ୧୭ । ୨ । ୮୦
ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ　　୧୦ । ୬ । ୮୦ ଠାରୁ

**ପୃଥିବୀର ସବୁଠାରୁ ଧନୀ ବ୍ୟକ୍ତି**

ଜିନ୍ ପାଲ ଗେଟି ହେଉଛନ୍ତି ପୃଥିବୀର ସବୁଠାରୁ ଧନୀ ବ୍ୟକ୍ତି । ତାଙ୍କ ଘର ଆମେରିକାର ମିନିଆ ପୋଲିସରେ । ପ୍ରଥମେ ସେ ଇଂଲଣ୍ଡରେ ବାସ କରୁଥିଲେ । ସେତେବେଳେ ତାଙ୍କର ପ୍ରଥମ ମୂଳଧନ ଥିଲା ୧,୩୩୮ ନିୟୁତ ଟଙ୍କା । ତାଙ୍କର ସାଧାରଣ ବ୍ୟବସାୟ ଥିଲା ତେଲ ।

**ସାପ ବିଷ ସଂଗ୍ରହ ସମବାୟ ସମିତି**

ସାପମାନଙ୍କୁ ବଞ୍ଚିବାକୁ ଦିଆଯିବା ଉଚିତ । ସେମାନଙ୍କର ବିଷ ପ୍ରତିରୋଧକାରୀ ଶକ୍ତି ଯୋଗାଇଥାଏ । ସାପ କାମୁଡ଼ା ପାଇଁ ଏହାର ଆବଶ୍ୟକତା ଯଥେଷ୍ଟ ବେଶୀ । ଯେଉଁ ଦେଶରେ ବର୍ଷକୁ ହଜାର ହଜାର ଲୋକ ସାପ କାମୁଡ଼ାରେ ପ୍ରାଣ ହରାଉଛନ୍ତି ସେହି ଦେଶରେ ସାପମାନଙ୍କୁ ମାରିଦେବା ଅପେକ୍ଷା ବିଷ ପ୍ରତିରୋଧକାରୀ ଔଷଧ ଅଧିକ-ପରିମାଣରେ ରଖିବା ଉଚିତ ।

ବିଶ୍ୱାସ କରନ୍ତୁ ବା ନ କରନ୍ତୁ ସାପର ବିଷ ପୃଥିବୀରେ ଏକ ମୂଲ୍ୟବାନ ପଦାର୍ଥ । ପ୍ରତି ଗ୍ରାମ୍‌ର ମୂଲ୍ୟ ୨୮ ହଜାର ଟଙ୍କା । ସାପ ଚମଡ଼ାରେ ତିଆରି ହେଉଥିବା ବ୍ୟାଗର ମୂଲ୍ୟ ତାହାର ଏକଶହ ଭାଗରୁ ଭାଗେ ମଧ୍ୟ ନୁହେଁ; ତେଣୁ ଏକ ଜୀବନ୍ତ ସାପର ମୂଲ୍ୟ ସୁନା ପରି ଅଟେ । ତାମିଲନାଡୁରେ ବାସ କରୁଥିବା ଇରଲୁସମାନେ ସାପ ମାରୁନାହାଁନ୍ତି । କାରଣ ସେମାନେ ସାପର ବିଷକୁ ତରଳ ସୁନାର ଆଖ୍ୟା ଦେଇଛନ୍ତି । ପୂର୍ବେ ଏମାନେ ସାପ ଚମଡ଼ା ବିକି ଜୀବନ ଯାପନ କରୁଥିଲେ ।

ମାନ୍ଦ୍ରାଜ ସହରର ସହରତଳି ଅଞ୍ଚଳରେ ସାପ ଚମଡା ଓ ପରମାଂସ ଗନ୍ଧରେ ପରିପୂର୍ଣ୍ଣ ହୋଇଥିଲା । ୧୯୭୬ ମସିହାରେ ସରକାର ଆଇନ କଲେ ଯେ, ସାପ ମାରିବା ଓ ସାପ ଚମଡା ବିକିବା ଏକ ବେଆଇନ କାର୍ଯ୍ୟ । ଏହା ଫଳରେ ସାପମାନଙ୍କୁ ଯେପରି ମନଇଚ୍ଛା ମାରି ଦିଆଯାଉଥିଲା ତାହା ଆଉ ହେଲାନାହିଁ, କିନ୍ତୁ ଏହି ଆଇନ ବଳରେ ଇରଲୁସମାନେ ଅସୁବିଧାରେ ପଡ଼ିଲେ । ସେମାନେ ବଞ୍ଚିବେ କିପରି ? ସାପ ଧରି ଯେଉଁମାନେ ଜୀବିକା ଅର୍ଜନ କରୁଥିଲେ ଏହି ଆଇନ ଫଳରେ ସେମାନଙ୍କ ବ୍ୟବସାୟ ମାରା ପଡ଼ିଥିଲା । ସାପ ଧରିବାର ଯେଉଁ କୌଶଳ ତାହା ବୋଧେ ପୃଥିବୀରୁ ଲୋପ ପାଇଯିବ ବୋଲି ଆଶା କରଗଲା । ଜୀବନ ଧାରଣ ପାଇଁ ଅନ୍ୟ ଏକ ବିକଳ୍ପ ପନ୍ଥା ଦେଖିବାକୁ ହେବ । ଏହା ପରେ ଗଢ଼ଉଠିଲା ଇରୁଲି ସାପ ଧରାଳୀ ସମବାୟ ସମିତି । ପୃଥିବୀରେ ଏହା ବୋଧେ ଏକ ମାତ୍ର ଅନୁଷ୍ଠାନ । ସାପ ବିଷକୁ କିପରି ସାପଠାରୁ ନେବାକୁ ହେବ ସେହି ବିଦ୍ୟା ସମ୍ପର୍କରେ ଏହି ସମିତି ପକ୍ଷରୁ ଆଦିବାସୀମାନଙ୍କୁ ଶିକ୍ଷା ଦିଆଯାଏ

କୌଣସି ଦଲାଲ ମଝିରେ ପଶି ଲାଭ ଉଠାଉ ନାହାନ୍ତି । ବର୍ତ୍ତମାନ ଏହି ଆଦିବାସୀମାନେ ସାପକୁ ହତ୍ୟା ନ କରି ତାର ବିଷ ସଂଗ୍ରହ କରୁଛନ୍ତି ।

୧୯୭୮ ମସିହାରେ ଏହି ସମିତି ଗଠନ କରାଗଲା । ମାନ୍ଦ୍ରାଜ ଓ ଚିଙ୍ଗଲପେଟ ଅଞ୍ଚଳରେ ୫୨ଟି ପରିବାର ସାପ ଧରିବାର ଲାଇସେନସ୍ ପାଇଲେ । ସେମାନେ ସମସ୍ତ ପ୍ରକାର ସାପଧରି ସମିତିର ପରୀକ୍ଷାଗାରକୁ ନେଇଆସନ୍ତି । ପ୍ରତ୍ୟେକ କଟକଟିଆ ନାଗ ପାଇଁ ୨୦ ଟଙ୍କା, କ୍ରେଟ ପାଇଁ ୧୫ ଟଙ୍କା ଦିଆଯାଏ । ଏକ ହଜାର ସାପ ଧରାଳୀ ସାହାଯ୍ୟ ଯୋଗାଇ ଦେବା ପାଇଁ ସମିତି ପକ୍ଷରୁ ସ୍ଥିର କରାଯାଇଛି । ପରୀକ୍ଷାଗାରକୁ ସାପ ଆଣିଥିବା ବ୍ୟକ୍ତିମାନେ ନିଜେ ସାପ ବିଷ କାଢନ୍ତି । ୧୦ଟି ଗୋଖର ସାପ ଠାରୁ ଏକ ଗ୍ରାମ ବିଷ ସଂଗୃହୀତ ହୁଏ । ଏହାର ମୂଲ୍ୟ ୪୦୦ ଟଙ୍କା । କିନ୍ତୁ ସମୁଦ୍ର ସାପମାନଙ୍କ ଠାରୁ ସଂଗ୍ରହ କରାଯାଉଥିବା ଏକ ଗ୍ରାମ୍ ବିଷର ମୂଲ୍ୟ ୧୮ ହଜାର ଟଙ୍କା ।

କେତେକ ପ୍ରତିଷ୍ଠାନ ଅଛି, ଯେଉଁଠାରେ କି ସାପମାନଙ୍କୁ ଧରାଯାଇ ସେଠାରେ ରଖାଯାଏ ଓ ସେମାନଙ୍କ ଠାରୁ ବିଷ ସଂଗ୍ରହ କରାଯାଏ । କିନ୍ତୁ ପୋଷା ଯାଇଥିବା ସାପ ଶୀଘ୍ର ମରିଯାଏ । ଇରୁଲିମାନେ ଗୋଟିଏ ସାପ ଧରି ତାକୁ ୧ ମାସରୁ ଅଧିକ ସମୟ ରଖନ୍ତି ନାହିଁ । ଏହି ସମୟ ମଧ୍ୟରେ ସେମାନେ ସାପଠାରୁ ପ୍ରତି ସପ୍ତାହରେ ବିଷ ସଂଗ୍ରହ କରିନିଅନ୍ତି । ସାପଠାରୁ ବିଷ ନେବା ପରେ ତାକୁ ଗ୍ଲୁକୋଜ ଖାଇବାକୁ ଦିଆଯାଏ । ଏହା ପରେ ସାପକୁ ତା'ର ନିଜ ଅଭ୍ୟାସ ମୁତାବକ ଖାଦ୍ୟ ଦିଆଯାଏ । ଏହା ଫଳରେ ଧରାଯାଇଥିବା ସାପର ଜୀବନ ପ୍ରତି ବିପଦ ଦେଖାଯାଏ ନାହିଁ ।

ଇରୁଲସମାନେ ଭଲ ମୂଷା ଧରାଳୀ । ମୂଷା ଯେଉଁଠି ଥିବ ସେମାନେ ଶୁଙ୍ଘି କରି ତାହା କହିଦେବେ । ଲକ୍ଷାଦ୍ୱୀପର ମୂଷାମାନଙ୍କର ଦାଉ ଏତେ ବଢ଼ିଗଲା ଯେ, ନଡ଼ିଆ ଗଛ ବୁଦଗ ପ୍ରତି ଭୟଙ୍କର ବିପଦ ଦେଖାଗଲା । ଗୋଟିଏ ମୂଷା ଧରିଲେ ୧୪ ଟଙ୍କା ଦିଆଗଲା । ଏଥିରେ ମଧ୍ୟ ଇରୁଲସମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଇରୁଲସମାନଙ୍କୁ ଅନ୍ୟାନ୍ୟ ସୁବିଧା ସୁଯୋଗ ଯୋଗାଇ ଦିଆଯାଇଛି । ଟାଇଲ ଘର କରିବା ପାଇଁ ସରକାର ପ୍ରତ୍ୟେକ ଇରୁଲସ ପରିବାରକୁ ୫ ହଜାର ଟଙ୍କା ସାହାଯ୍ୟ ଦେଉଛନ୍ତି ।

**କାର୍ଲମାର୍କସଙ୍କର ଜୀବନର ଉଲ୍ଲେଖ୍ୟ ସନ ଓ ତାରିଖ**

୧୮୧୮ ଖ୍ରୀଷ୍ଟାବ୍ଦ ମେ ମାସ ୫ ତାରିଖରେ ଜନ୍ମ । ଜନ୍ମସ୍ଥାନ ଟ୍ରିୟେର । ପିତାଙ୍କର ନାମ ହାଇନରିଖ ମାର୍କସ । ଆଇନଜୀବୀ । ମାତା ହେନରାଏଟେ ମାର୍କସ । ବିବାହ ପର୍ବ ନାମ ପ୍ରେସ୍ ବୁରଗ ।

୧୮୩୦ ଖ୍ରୀଷ୍ଟାବ୍ଦ ଅକ୍ଟୋବରେ—ଫ୍ରିୟେଡ଼ରିଖ ୱିଲହେଲମ୍ ଉଚ୍ଚ ବିଦ୍ୟାଳୟରେ ପ୍ରବେଶ ।

୧୮୩୯ ଅକ୍ଟୋବର—ବର୍ଲିନ ବିଶ୍ୱବିଦ୍ୟାଳୟର ଆଇନ କଲେଜରେ ପ୍ରବେଶ ।

୧୮୪୧—ଏପ୍ରିଲ ୧୫ ତାରିଖ—ଇୟେନା ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ଡକ୍ଟରେଟ୍ ଉପାଧି ଲାଭକରି ଜନ୍ମସ୍ଥାନ ଟ୍ରିୟେରକୁ ପ୍ରତ୍ୟାବର୍ତ୍ତନ ଓ ପରେ ବନ୍ ଯାତ୍ରା ।

୧୮୪୨—ଅକ୍ଟୋବର—ନଭେମ୍ବର—କଲୋନ ସହରରେ ବାସ । ସେଠାରେ 'ରାଇନଇଶ୍ଚ ଜାଇତୁ'ର ପ୍ରଧାନ ସମ୍ପାଦକ । ଏହିଠାରେ ଫ୍ରିୟେଡ୍ରିଖ ଏନଗେଲସ୍ଙ୍କ ସହିତ ପ୍ରଥମ ସାକ୍ଷାତ ।

୧୮୪୩ ଜୁନ ୧୯ ତାରିଖ—ବିବାହ । ସ୍ତ୍ରୀ ଜେନି ଫନ୍‌ୱେସ୍ଟ ଫାଲେନ୍ । ସେହି ବର୍ଷ ପ୍ୟାରିସ ଯାତ୍ରା । ଉଦ୍ଦେଶ୍ୟ—ଆରନଲ୍ଡ୍ ରୁଗଙ୍କରେ ସହଯୋଗିତାରେ ଜର୍ମାନ-ଫ୍ରାନ୍ସ ବାର୍ଷିକ ପୁସ୍ତକ ପ୍ରକାଶନ ।

୧୮୪୫ ଫେବ୍ରୁୟାରୀ—ପ୍ୟାରିସରୁ ବହିଷ୍କୃତ ଓ ବ୍ରାସେଲସରେ ନିବାସ । ପ୍ରକାଶିତ ହୁଏ ମାର୍କସ ଏନଗେଲ୍‌ସଙ୍କର ପ୍ରଥମ ଯୁଗ୍ମ ଲେଖାଗ୍ରନ୍ଥ । The Holy family or A Critigue of critical criticism । ଏହାର ପର ବର୍ଷରେ ଏ ଦୁଇଜଣ ସମ୍ପୂର୍ଣ୍ଣ କରନ୍ତି । German Ideology ପୁସ୍ତକର ପ୍ରଧାନ ଅଂଶ ।

୧୮୪୭ ନଭେମ୍ବର—ଲଣ୍ଡନର ଅନୁଷ୍ଠିତ କମ୍ୟୁନିଷ୍ଟ ଲିଗ୍‌ର ଦ୍ୱିତୀୟ କଂଗ୍ରେସ ଅଧିବେଶନରେ ମାର୍କସ ଓ ଏନ୍‌ଗେଲସ ଅଂଶ ଗ୍ରହଣ କରନ୍ତି । ଲିଗ୍‌ର କାର୍ଯକ୍ରମ ପ୍ରସ୍ତୁତ କରିବା ନିମନ୍ତେ ସେମାନଙ୍କୁ ଦାୟିତ୍ୱ ଦିଆଯାଏ । ତାହା ୧୮୪୮ ଖ୍ରୀଷ୍ଟାବ୍ଦରେ କମ୍ୟୁନିଷ୍ଟ ମେନିଫେଷ୍ଟୋ ନାମରେ ପ୍ରକାଶିତ ହୁଏ ।

୧୮୪୮-୪୯—ମାର୍କସ, ଏନଗେଲ୍‌ସ ଓ ଅନ୍ୟାନ୍ୟ ସହକର୍ମୀଗଣ ଜର୍ମାନୀର ବୁର୍ଜୋୟା ଗଣତାନ୍ତ୍ରିକ ବିପ୍ଳବ ସାଧନରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି । କିନ୍ତୁ ପ୍ରତିବିପ୍ଳବ ଶକ୍ତିଶାଳୀ ହୋଇ ମାର୍କସଙ୍କୁ-ଦୁଇଥର ଅଭିଯୁକ୍ତ କରି ରାଜଦ୍ରୋହ ଅଭିଯୋଗରେ, କିନ୍ତୁ ସେ ଦୁଇଥରଯାକ ନିର୍ଦ୍ଦୋଷ ସାବ୍ୟସ୍ତ ହୁଅନ୍ତି । ସେ ବାଧ୍ୟ ହୋଇ ପ୍ରଥମେ ପ୍ୟାରିସକୁ ଚାଲିଯାଆନ୍ତି, ପରେ ୧୮୪୯ ମସିହା ଅଗଷ୍ଟ ମାସରେ ସପରିବାର ଲଣ୍ଡନ ଚାଲିଆସନ୍ତି ।

୧୮୫୦-୧୮୬୪—ମାର୍କସ ତାଙ୍କର ବହୁକାଳବ୍ୟାପୀ ନିରୀକ୍ଷା ଗବେଷଣା ଚଳାଇ ଯାଆନ୍ତି ଓ ତାଙ୍କର Critique of political Economy ପ୍ରକାଶିତ ହୁଏ ।

୧୮୬୪ ସେପ୍ଟେମ୍ବର ୨୮ ତାରିଖ—International working mens Association ର ଉଦ୍‌ବୋଧନୀ ଭାଷଣ ଓ ଅସ୍ଥାୟୀ ସଂବିଧାନ ରଚନା କରନ୍ତି । Association ର ନେତୃତ୍ୱ ଗ୍ରହଣ କରନ୍ତି ।

୧୮୬୪ ସେପ୍‌ଟେମ୍ବର ୧୮ ତାରିଖ—ଜର୍ମାନୀର ହାମବୁରଗ ସହରରେ ପ୍ରକାଶିତ ହୁଏ ତାଙ୍କର ପ୍ରଧାନ ଅର୍ଥନୈତିକ ଗ୍ରନ୍ଥ DAS—Capial ର ପ୍ରଥମ ଖଣ୍ଡ । ତାଙ୍କର ମୃତ୍ୟୁପରେ ଏନଗେଲସ ଦ୍ୱିତୀୟ ଖଣ୍ଡ ପ୍ରସ୍ତୁତ କରନ୍ତି ଓ ତାହା ୧୮୮୫ ଖ୍ରୀଷ୍ଟାବ୍ଦରେ ଏନଗେଲସଙ୍କର ଭୂମିକା ସହ ହାମବୁର ଗରେ ପ୍ରକାଶିତ ହୁଏ ।

୧୮୭୦ ସେପ୍‌ଟେମ୍ବର-୧୮୭୧ ମେ-ପୂର୍ବୋକ୍ତ Associetion ର ଜେନେରଲ କାଉନସିଲ ସର୍ବସମ୍ମତିକ୍ରମେ ଗ୍ରହଣ କରନ୍ତି ମାର୍କସଙ୍କର ସମ୍ଭାଷଣ ଫ୍ରାଙ୍କୋ-ପ୍ରୁସିଆନ ଯୁଦ୍ଧ ଏବଂ ଫ୍ରାନ୍‌ସର ଗୃହଯୁଦ୍ଧ ଉପରେ ।

୧୮୭୫ ଅଗଷ୍ଟ—ଅକ୍‌ଟୋବର—ସ୍ୱାସ୍ଥ୍ୟ ନିମନ୍ତେ ମାର୍କସଙ୍କର ଚେକୋସ୍ଲୋଭାକିୟାସ୍ଥିତ କାରଲବାଦକୁ ଗମନ । କନ୍ୟା ଏଲଗିନ ସାଙ୍ଗରେ ଯାଆନ୍ତି । ଲଣ୍ଡନର ଡ୍ରେସଡେନ ବାଟେ ଫେରି ଆସନ୍ତି । ପୁଣି ୧୮୭୫ ଅଗଷ୍ଟ ମାସରେ କାରଲବାଦ ଗମନ ।

୧୮୮୯ ଡିସେମ୍ବର ୨ ତାରିଖ—ଲଣ୍ଡନରେ ସ୍ତ୍ରୀଙ୍କର ମୃତ୍ୟୁ ।

୧୮୮୨ ଫେବୃୟାରୀ—ଅକ୍‌ଟୋବର—ଆଲଜିୟର୍ସ, ଦକ୍ଷିଣ ଫ୍ରାନ୍‌ସ ଓ ସୁଇଜରଲ୍ୟାଣ୍ଡ ଭ୍ରମଣ । ଫ୍ରାନସରେ କନ୍ୟା ଇୟେନି ଓ ଜେନିଙ୍କ ସହିତ ସାକ୍ଷାତ ।

୧୮୮୬ ମାର୍ଚ୍ଚ ୧୮ ତାରିଖ—ଲଣ୍ଡନରେ ମୃତ୍ୟୁ । ହାଇଗେଟ ସେଟକବର ସ୍ଥାନରେ ସମାଧି ।

